❊ ଜୟ ମା କଳିଙ୍ଗ ଭାରତୀ ❊

ପ୍ରତଷ୍ଠାତା-ସଭାପତ

ଶ୍ରୀ ବଛନ୍ଦଚରଣ ପଟ୍ଟନାୟକଙ୍କ ଦ୍ୱାରା

ସାମ୍ବାଦକ ସମ୍ମିଳନୀରେ ଦଆଯାଇଥିବା

# କଳିଙ୍ଗ ଭାରତୀର ସଂକ୍ଷିପ୍ତ ପରିଚୟ

**୨୨ । ୪ । ୫୫**

**କଟକ**

# କଳିଙ୍ଗ ଭାରତୀ



## ସଂକ୍ଷିପ୍ତ ପରିଚୟ

କଳିଙ୍ଗ ଭାରତୀ ପ୍ରତିଷ୍ଠାନ ଦ୍ୱାଦଶ ବର୍ଷରେ ପଦାର୍ପଣ କରିଅଛି । ଦ୍ୱାଦଶ ବର୍ଷ ତଳେ ଉତ୍କଳ ଯୁବ ସାହିତ୍ୟ ସମାଜ ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । ଉଭୟ ଅନୁଷ୍ଠାନର ମୁଁ (ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ) ପ୍ରତିଷ୍ଠାତା-ସଭାପତି । ପ୍ରଥମ ଅବସ୍ଥାରେ କଳିଙ୍ଗ ଭାରତୀର ମୁଁ ଏକମାତ୍ର ସଭ୍ୟ ଥିଲି । ଉତ୍କଳ ଯୁବ ସାହିତ୍ୟ ସମାଜକୁ କଳିଙ୍ଗ ଭାରତୀର ପରିପୂରକ ଓ ପରିପୋଷକ ଅନୁଷ୍ଠାନରୂପେ ରଖି ମୁଁ କଳିଙ୍ଗ ଭାରତୀର ମହାନ୍ ଆଦର୍ଶକୁ ବିଭିନ୍ନ କବି ମହାକବିଙ୍କ ଜୟନ୍ତୀ ମାଧ୍ୟମରେ ଦେଶ ସମକ୍ଷରେ ଉପସ୍ଥାପିତ କରି ଆସିଛି । ଆଜି ଉତ୍କଳ ଯୁବ ସାହିତ୍ୟ ସମାଜକୁ ଅଙ୍ଗୀଭୂତ ସଂସ୍ଥାରୂପେ ଗ୍ରହଣ କରି କଳିଙ୍ଗ ଭାରତୀ ପ୍ରତିଷ୍ଠାନ ସଂଗଠିତ ହୋଇଅଛି ଏବଂ ସୋସାଇଟିଜ୍ ରେଜିଷ୍ଟ୍ରେସନ୍ ଆକ୍ଟ ଅନୁସାରେ ଏହାକୁ ରେଜିଷ୍ଟ୍ରି କରିବା ପାଇଁ ବ୍ୟବସ୍ଥା ହୋଇଅଛି । ଉତ୍କଳ ଯୁବ ସାହିତ୍ୟ ସମାଜରେ ନିରବଚ୍ଛିନ୍ନ ଭାବରେ ଯେଉଁମାନେ ଅନ୍ୟୂନ ପାଞ୍ଚବର୍ଷ ସାଧନା କରି ସିଦ୍ଧି ନିକଟବର୍ତ୍ତୀ ହୋଇଅଛନ୍ତି ସେମାନଙ୍କୁ କଳିଙ୍ଗ ଭାରତୀ ପ୍ରତିଷ୍ଠାନର ସାଧକସଭ୍ୟ ପଦରେ ଭୂଷିତ କରାଯାଇଅଛି । ମୋ ସହିତ ଏବେ ସେହିମାନେ କଳିଙ୍ଗ ଭାରତୀ ପ୍ରତିଷ୍ଠାନ ଗଠନ କରିଅଛନ୍ତି ଏବଂ ଆମ୍ଭମାନଙ୍କୁ ପରାମର୍ଶ ଦେବା ଉଦ୍ଦେଶ୍ୟରେ ବାହାରର କେତେକ ଜଣ ସମଧର୍ମୀ ବିଶିଷ୍ଟ ବ୍ୟକ୍ତିଙ୍କୁ ଆମ୍ଭେମାନେ ସହଯୋଗୀ ସଭ୍ୟରୂପେ ଗ୍ରହଣ କରିଅଛୁଁ ।

# ଦୁଇ

କଳିଙ୍ଗ ଭାରତୀ ଓ ଉତ୍କଳ ଛାତ୍ର ସାହିତ୍ୟ ସମାଜ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ମୁଁ ସ୍ୱତନ୍ତ୍ର ଭାବରେ ଏ ଦୁଇ ପ୍ରତିଷ୍ଠାନକୁ କାହିଁକି ପ୍ରତିଷ୍ଠା କରିଛି, ତାହା ଆଜି ଆପଣମାନଙ୍କ ଆଗରେ ଉପସ୍ଥାପିତ କରୁଅଛି ।

ମୋର ହେତୁ ହେଲା ଦିନଠାରୁ ମୁଁ ଉପଲବ୍ଧି କରି ଆସିଛି ଯେ ଓଡ଼ିଆ ସାହିତ୍ୟର ମୂଳ ଉତ୍ସ ଶୁଖିଯାଉଛି ଏବଂ ଏହାର କମନୀୟ ପରମ୍ପରା ଭାଙ୍ଗିରୁଜି ଯାଉଛି । ତରୁଣ ବୟସରେ ମୁଁ ଯେଉଁସବୁ ଆଧୁନିକ କାବ୍ୟ କବିତା ପାଠ କରିବାକୁ ପାଉଥିଲି, ତହିଁରେ ଆଧ୍ୟାତ୍ମିକତାର ମନ୍ଦ୍ର ଝଙ୍କାର ନ ଥିଲା ବା କର୍ଣ୍ଣ ମନ ଆପ୍ୟାୟନ କରିବାକୁ ଓଡ଼ିଶି ଛନ୍ଦର ମଧୁର ମୂର୍ଚ୍ଛନା ନ ଥିଲା । ଏଥିଯୋଗୁଁ ମୋର ଯେଉଁ ଗଭୀର କଷ୍ଟ ହେଉଥିଲା, ତାକୁ ମୁଁ ନୀରବରେ ମନରେ ମାରି ଦିନ ବ୍ୟତୀତ କରୁଥିଲି । ସ୍କୁଲ ଓ କଲେଜ ଜୀବନରେ ମୋ ହୃଦୟର ଏ ମର୍ମ୍ମର ଦାହ ଗୁପ୍ତ ହୋଇ ରହିଥିଲା । ୧୯୨୩ ମସିହା ବେଳକୁ କଲେଜରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି "ପ୍ରାଚୀ ସମିତି" ସ୍ଥାପନ କରିବାର ସୂତ୍ରପାତ କରିବାରୁ ମୁଁ ଉକ୍ତ ସମିତିର ସମ୍ପାଦକ ରୂପେ ଯୋଗଦାନ କରିଥିଲି । ମୁଁ ସେ ସମିତିରେ ୧୯୩୪ ମସିହା ପର୍ଯ୍ୟନ୍ତ ରହିଥିଲି । ତହିଁରେ ପ୍ରାଚୀନ ସାହିତ୍ୟର ଉଦ୍ଧାର ପାଇଁ ସଫଳ ପ୍ରଚେଷ୍ଟା ହେଉଥିଲା; କିନ୍ତୁ ଆଧୁନିକ ଓଡ଼ିଆ କବିତାର ଧାରା ବା ରୂପ ବଦଳାଇବା କଥା ତହିଁରେ କେହି ଭାବୁ ନ ଥିଲେ । ତଥାପି ଜାତୀୟ ସାହିତ୍ୟର ନିବିଡ଼ ଅନୁଶୀଳନ ଦ୍ୱାରା ତହିଁର ପୀୟୂଷଧାରାରେ ଅନ୍ତର ଆପ୍ଳୁତ କରି ମୁଁ ପରମସୁଖ ଉପଭୋଗ କରୁଥିଲି । ପ୍ରାଚୀ ସମିତିରୁ ବିଦାୟ ନେବାର ପ୍ରାୟ ଦୁଇବର୍ଷ ପୂର୍ବରୁ ମୁଁ ଉତ୍କଳ ସାହିତ୍ୟ ସମାଜର ସହକାରୀ ସମ୍ପାଦକରୂପେ

ନିର୍ବାଚିତ ହୋଇଥିଲି । ପ୍ରାଚୀ ସମିତିର ଇଂରାଜୀ ମୁଖପତ୍ର "ପ୍ରାଚୀ" ପତ୍ରିକାରେ ମୁଁ ଓଡ଼ିଶାର କବି ମହାକବିମାନଙ୍କ କବିତାର ଇଂରାଜୀ ଅନୁବାଦ ପ୍ରକାଶ କରି ଉତ୍କଳ ସାରସ୍ୱତ ବିଭବକୁ ବିଶ୍ୱସମକ୍ଷରେ ପରିଚିତ କରାଉଥିଲି । ଉତ୍କଳ ସାହିତ୍ୟ ସମାଜରେ ଛାନ୍ଦ ଓ ଓଡ଼ିଶି ରାଗରେ ଆଧୁନିକ ଭାବଧାରାସମ୍ବଳିତ କବିତା ଲେଖି ପ୍ରକାଶ କରିବାର ମୁଁ କଳ୍ପିତ ସୁଯୋଗ ଲାଭ କଲି । ସେ ଅନୁଷ୍ଠାନରେ ବର୍ଷର ବିଭିନ୍ନ ସମୟରେ ପୂର୍ବେ ଯେଉଁସବୁ ଉତ୍ସବ ପାଳିତ ହେଉଥିଲା ସେ ସବୁର ପ୍ରାରମ୍ଭିକ ଓ ଶେଷ ସଙ୍ଗୀତ କେବଳ ମୁଁ ରଚନା କରୁଥିଲି ଏବଂ ଛାନ୍ଦ ଓ ଓଡ଼ିଶି ସଙ୍ଗୀତର ତତ୍କାଳୀନ ନିପୁଣ ଗାୟକ ଗାୟିକାଙ୍କ ଦ୍ୱାରା ସେ ସବୁକୁ ଗାନ କରାଉଥିଲି । ଉତ୍କଳ ସାହିତ୍ୟ ସମାଜ ମାଧ୍ୟମରେ ସତେ ଅବା ଓଡ଼ିଆ କବିତା ରଚନାର ପରମ୍ପରା ଫେରିଆସିବ, ମୋ ମନରେ ଏପରି ଗୋଟିଏ ଅସ୍ପଷ୍ଟ ଆଶା ହେଉଥିଲା । ତତ୍କାଳୀନ ମାସିକ ପତ୍ରିକାମାନଙ୍କରେ ମଧ୍ୟ ମୁଁ ଛାନ୍ଦ ଓ ଓଡ଼ିଶି ରାଗରେ ଲିଖିତ କେତେକ ଗୀତ ପ୍ରକାଶ କରୁଥିଲି । କିନ୍ତୁ ବିଜାତୀୟ ପ୍ରଭାବର କବଳରୁ ଜାତୀୟ ପରମ୍ପରାକୁ ରକ୍ଷାକରିବା ନିମନ୍ତେ ଏହା ଯେ ଆଦୌ ପର୍ଯ୍ୟାପ୍ତ ନ ଥିଲା, ଏହା ବୁଝୁଥିଲେ ସୁଦ୍ଧା ପାଣିରେ ବୁଡ଼ି-ଯାଉଥିବା ଲୋକ ଭାସିଯାଉଥିବା କୁଟାଖିଅକୁ ଧରି ପକାଇଲା ଭଳି ମୁଁ ମୋ ଉଦ୍ୟମ କରିଯାଉଥିଲି । ମୁଁ ବିଡ଼ମ୍ବିତ ନ ହୁଅନ୍ତି ତ ଆଉ ବିଡ଼ମ୍ବିତ ହୁଅନ୍ତା କିଏ ?

ଏହାପରେ ୧୯୪୩-୪୪ ମସିହାରେ ମୋତେ ଉତ୍କଳ ସାହିତ୍ୟ ସମାଜରୁ ବିଦାୟ ନେବାକୁ ପଡ଼ିଲା । ଉତ୍କଳ ସାହିତ୍ୟ ସମାଜରେ ଥିବା ସମୟରେ ମୁଁ ବିଭିନ୍ନ ଶିକ୍ଷାନୁଷ୍ଠାନର

ଛାତ୍ରଙ୍କୁ ନେଇ ଉତ୍କଳ ଛାତ୍ର ସାହିତ୍ୟ ସମାଜ ନାମରେ ଗୋଟିଏ ସ୍ୱତନ୍ତ୍ର ଅନୁଷ୍ଠାନ ଗଢ଼ିବାର ଯୋଜନା କରିଥିଲି ।

ମୁଁ ଉତ୍କଳ ସାହିତ୍ୟ ସମାଜରୁ ବିଦାୟ ନେବାରୁ ତେତେବେଳେ ସ୍କୁଲରେ ଶିକ୍ଷାର୍ଥୀ ଶ୍ରୀମାନ ହୃଦାନନ୍ଦ ରାୟ, ଶ୍ରୀମାନ ଯଶୋଦା ମୋହନ ପରିଡ଼ା, ଶ୍ରୀମାନ ଗୋପବନ୍ଧୁ ରଥ, ଶ୍ରୀମାନ୍ ବିଜୟ କୁମାର କାନୁନଗୋ, ଶ୍ରୀମାନ୍ ଅନ୍ନଦାଚରଣ ଦାସ, ଶ୍ରୀମାନ୍ ପ୍ରମୋଦ ପତି ଓ ସ୍ୱର୍ଗତ ବିନାୟକ ଚୌଧୁରୀ ପ୍ରମୁଖ ପ୍ରାୟ ଶତସଂଖ୍ୟକ ଛାତ୍ର ତଗରପଡ଼ାର ମୋ ବାସଭବନରେ ୧୯୪୪ ମସିହାରେ ଉତ୍କଳ ଛାତ୍ର ସାହିତ୍ୟ ସମାଜ ଗଠନ କଲେ । କିନ୍ତୁ ଏ ଛାତ୍ରଗୋଷ୍ଠୀରେ ମଧ୍ୟ ବିଜାତୀୟ ଆଦର୍ଶରେ ବିମୁଗ୍ଧ ଯେଉଁ ଅଳ୍ପ କେତେ ଜଣ ଛାତ୍ର ପଶି ଯାଇଥିଲେ, ସେମାନେ କାଳକ୍ରମେ ଏଥିରେ ନିଜର ଅସ୍ତିତ୍ୱକୁ ଅସମ୍ଭବ ମନେ କରି ବିଦାୟ ନେଲେ । କଳିଙ୍ଗ ଭାରତୀ ଆଦର୍ଶକୁ ଶିରୋଧାର୍ଯ୍ୟ କରି ବିଶୁଦ୍ଧ ଜାତୀୟତାର ଅଟଳ ଭିତ୍ତିଉପରେ ଉତ୍କଳ ଛାତ୍ର ସାହିତ୍ୟ ସମାଜ ସୁପ୍ରତିଷ୍ଠିତ ହେଲା ।

ଶ୍ରୀ ହୃଦାନନ୍ଦ ରାୟ ସଂଗଠକ ପ୍ରଚାରକ ହୋଇ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଉତ୍କଳ ଛାତ୍ର ସାହିତ୍ୟ ସମାଜର ଶାଖାମାନ ସ୍ଥାପନ କଲେ । ଉତ୍କଳ ଛାତ୍ର ସାହିତ୍ୟ ସମାଜର ପରିସର ବ୍ୟାପିବାରେ ଲାଗିଲା ।

୧୯୪୭ ମସିହାରୁ ଚୂଡ଼ାନ୍ତ ଭାବରେ ପ୍ରବର୍ତ୍ତିତ ଓ ଅଦ୍ୟାବଧି ପ୍ରଚଳିତ ଉତ୍କଳ ଛାତ୍ର ସାହିତ୍ୟ ସମାଜର ସଂବିଧାନରେ ସଭ୍ୟ-ମାନଙ୍କ ପାଇଁ ନିର୍ଦ୍ଧାରିତ ଶପଥ ପତ୍ର ଆପଣମାନଙ୍କ ଅବଗତି ନିମନ୍ତେ ନିମ୍ନରେ ଉଦ୍ଧାର କରି ଦିଆଗଲା ।

"ମୁଁ ଉତ୍କଳ ଯୁବ ସାହିତ୍ୟ ସମାଜର ନିୟମାବଳୀ ପାଠ କରିଅଛି ଏବଂ ପୂର୍ଣ୍ଣପ୍ରାଣରେ ତାହା ପାଳନ କରିବି ବୋଲି ଅଙ୍ଗୀକାର କରୁଅଛି । ମୁଁ ଉତ୍କଳୀୟ ପରମ୍ପରାର ଉପାସକ ଏବଂ ତାହାକୁ ଭିତ୍ତି କରି ବିଜାତୀୟତା ପରିହାରପୂର୍ବକ ଜାତୀୟ ସାହିତ୍ୟ ଓ କଳା ସୃଷ୍ଟି କରିବା ପାଇଁ ଏତଦ୍ଦ୍ୱାରା ଶପଥ ଗ୍ରହଣ କଲି । ଏ ଶପଥ ଲଙ୍ଘନ କଲେ ଉତ୍କଳ ଯୁବ ସାହିତ୍ୟ ସମାଜରେ ମୋର ସ୍ଥାନ ରହିବ ନାହିଁ ।

—ଜୟ ମା କଳିଙ୍ଗ ଭାରତୀ"

ଏହି ଦୃଢ଼ ଶପଥ ଗ୍ରହଣ କରି ଉତ୍କଳର ବିଭିନ୍ନ ଶିକ୍ଷାନୁଷ୍ଠାନମାନଙ୍କର ଶତ ଶତ ଯୁବ ବର୍ଷକୁ ବର୍ଷ ଉତ୍କଳ ଯୁବ ସାହିତ୍ୟ ସମାଜର ସଭ୍ୟ ହୋଇଅଛନ୍ତି ଏବଂ ସେମାନଙ୍କର ମିଳିତ ସହଯୋଗରେ କଳିଙ୍ଗ ଭାରତୀ ସାମ୍ମୁଖ୍ୟ ସଂଗଠିତ ହୋଇଅଛି ।

୧୯୪୪ ମସିହାରୁ ଆଜି ପର୍ଯ୍ୟନ୍ତ ପ୍ରତିଦିନ ଉତ୍କଳ ଯୁବ ସାହିତ୍ୟ ସମାଜର କଟକରେ ଉପସ୍ଥିତ ଥିବା ସଭ୍ୟମାନେ କଳିଙ୍ଗ ଭାରତୀ ଭବନରେ ଏକତ୍ରିତ ହୁଅନ୍ତି ଏବଂ ମୁଁ ଥିବାବେଳେ ମୋଠାରୁ କଳିଙ୍ଗ ଭାରତୀ ଆଦର୍ଶ ସମ୍ପର୍କରେ ଉପଦେଶ ଗ୍ରହଣ କରନ୍ତି । ଜଣ ଜଣ କରି ପ୍ରତ୍ୟହ ସମସ୍ତଙ୍କର ମୁଁ ସନ୍ଦେହ ମୋଚନ କରେ । ପ୍ରାଚୀନ କାବ୍ୟ କବିତାର ପଠନ ପାଠନ, ଆଲୋଚନା ସମାଲୋଚନା ଓ ବକ୍ତୃତାଦିରେ ଅସ୍ମମାନଙ୍କର ସମୟ ବ୍ୟତୀତ ହୁଏ । ସଭ୍ୟମାନେ ବକ୍ତୃତା ପ୍ରତିଯୋଗିତା ଓ ରଚନା ପ୍ରତିଯୋଗିତାରେ ଯୋଗ ଦିଅନ୍ତି ଏବଂ ମୋ ପରୀକ୍ଷଣ ଦ୍ୱାରା ନିଜ ନିଜ ପ୍ରତିଭା ଓ ଶକ୍ତିର କଳନା କରନ୍ତି । ସେମାନଙ୍କୁ ପ୍ରାଚୀନ ତାଳପତ୍ର ପୋଥି ପଢ଼ା ଶିଖାଇ ସେ ସବୁରୁ କବିତା ଉଦ୍ଧାର କରିବାର କୌଶଳ ମୁଁ ଶିଖାଏଁ ଏବଂ ମୋ ବ୍ୟକ୍ତିଗତ ପୁସ୍ତକ

ଭଣ୍ଡାରକୁ ସେମାନେ ନିଜର ବୋଲି ଜ୍ଞାନ କରି ତହିଁରୁ ଜ୍ଞାନାର୍ଜନ କରିବାର ଅବାଧ ସୁଯୋଗ ଲାଭ କରନ୍ତି । 'ବିପଞ୍ଚୀ' ନାମକ ହସ୍ତ-ଲିଖିତ ପତ୍ରିକାରେ ସେମାନେ ରଚନା ଓ ଚିତ୍ରାଙ୍କନ ପାଟବ ପ୍ରକଟନ କରନ୍ତି ଏବଂ ବିଭିନ୍ନ ଜୟନ୍ତୀ ଉତ୍ସବ ହେଲେ ତହିଁପାଇଁ ବିଶେଷ ଜ୍ଞାନାର୍ଜନ କରି ପ୍ରବନ୍ଧ ଲେଖା ବା ବକ୍ତୃତା ପାଇଁ ପ୍ରସ୍ତୁତ ହୁଅନ୍ତି । କୌଣସି ବିଶେଷ ଅସୁବିଧା ନ ହେଲେ ଏ କର୍ମ ପ୍ରବାହରେ କେବେହେଲେ ଛେଦ ଘଟେ ନାହିଁ । ଆଜି ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ କଳିଙ୍ଗ ଭାରତୀ ଦୃଷ୍ଟିଭଙ୍ଗୀ ବୋଲି ଯେଉଁ ସ୍ୱତନ୍ତ୍ର ସାମ୍ମୁଖ୍ୟ ସୃଷ୍ଟି ହୋଇଅଛି, ତାହା ଏହି କ୍ଷୁଦ୍ର ସାଧକ ଗୋଷ୍ଠୀର ଦ୍ୱାଦଶ ବର୍ଷବ୍ୟାପୀ ନିରବଚ୍ଛିନ୍ନ ଦୈନନ୍ଦିନ ସାଧନାର ଫଳ । ବର୍ଷକୁ ବର୍ଷ ବିଭିନ୍ନ ଶିକ୍ଷାନୁଷ୍ଠାନମାନଙ୍କରୁ ନୂତନ ନୂତନ ଛାତ୍ରମାନେ ଆସି ଏ ପ୍ରବାହକୁ ଏବଂ ଏହାର ଶାଖା ପ୍ରବାହମାନଙ୍କୁ ପୁଷ୍ଟ କରିଅଛନ୍ତି । କଳିଙ୍ଗ ଭାରତୀ ଅନୁଷ୍ଠାନର ପରିକଳ୍ପନା ଏପରି ହୋଇଅଛି ଯେ ଏ ସାଧକଗୋଷ୍ଠୀ ବର୍ଷକୁ ବର୍ଷ ବଢ଼ି ବଢ଼ି ଗୁଳିବ ଏବଂ କାଳକ୍ରମେ କଳିଙ୍ଗ ଜାତୀୟତାର ବଳିଷ୍ଠ ବାର୍ତ୍ତାବହରୂପେ ଧ୍ୱଜା ଉନ୍ନତ ରଖି ନବ ସାରସ୍ୱତ ଯୁଗ ଆଗମନୀର ଶୁଭ ଶଙ୍ଖ ବାଦନ କରି କରି ଅଗ୍ରସର ହେବ ।

ନିମ୍ନରେ ବର୍ଷ ବର୍ଷ ଧରି ଏ ସାଧକଗୋଷ୍ଠୀ କିପରି ସଂଗଠନ ପଥରେ ପଥିକ ହୋଇଅଛି, ତହିଁର ସଂକ୍ଷିପ୍ତ ପରିଚୟ ପ୍ରଦତ୍ତ ହେଲା ।

## ୧୯୪୪

ପ୍ରତିଷ୍ଠାବ୍ଦ ୧୯୪୪ ମସିହା ମେ ମାସ ୧୭ ତାରିଖରେ ସର୍ବ ପ୍ରଥମେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀର ଶୁଭ ଉଦ୍‌ଘାଟନ ହୋଇଥିଲା । ମୁଁ ପୁରୋଧା ହୋଇଥିଲି । ସେହି ଦିବସକୁ ଉତ୍କଳ

ସ୍ଥାନ ସାହିତ୍ୟ ସମାଜ ତଥା କଳିଙ୍ଗ ଭାରତୀର ଆବିର୍ଭାବ ଦିବସରୂପେ ଗ୍ରହଣ କରାଯାଇଛି ।

ଜୁଲାଇ ମାସ ୯ ତାରିଖରେ ଉକ୍ତ ସ୍ଥାନ ସାହିତ୍ୟ ସମାଜର ପ୍ରଥମ ନିୟମାବଳୀ ପ୍ରଣୀତ ଓ ପ୍ରବର୍ତ୍ତିତ ହୋଇଥିଲା । ଶ୍ରୀ ହୃଦାନନ୍ଦ ରାୟ ସମ୍ପାଦକ ଓ ଶ୍ରୀ ସୋମନାଥ ପୃଷ୍ଟି ସହକାରୀ ସମ୍ପାଦକରୂପେ ନିର୍ବାଚିତ ହୋଇଥିଲେ ।

ଉକ୍ତ ମାସ ୨୩ ତାରିଖରେ ଓ ୩୦ ତାରିଖରେ ଦୁଇଟି ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ତହିଁରେ ଯଥାକ୍ରମେ ଓଡ଼ିଶାର ପ୍ରାଚୀନ କବି ଓ ନବୀନ କବି ଏବଂ ସାହିତ୍ୟ ଓ ରାଧାନାଥ ସାହିତ୍ୟ ବିଷୟରେ ଆଲୋଚନା ହୋଇଥିଲା ।

ଅଗଷ୍ଟ ମାସ ୧୨ ଓ ୨୭ ତାରିଖରେ ଦୁଇଟି ସାଧାରଣ ସଭାରେ ଯଥାକ୍ରମେ ନାଟକର ରୂପ ଓ ଶବ୍ଦ-ଶିଳ୍ପର ସାରକଥା ସମ୍ବନ୍ଧରେ ଆଲୋଚନା ହୋଇଥିଲା ।

ସେପ୍ଟେମ୍ବର ମାସ ୧୬ ତାରିଖ ଦିନ କବି-କଳହଂସ ଗୋପାଳକୃଷ୍ଣଙ୍କ ଜୟନ୍ତୀ ସମାରୋହରେ ପାଳିତ ହୋଇଥିଲା । ଶ୍ରୀ ହୃଦାନନ୍ଦ ରାୟ ନବୀନ ଯୁଗରେ ପ୍ରାଚୀନର ଅବହେଳା ନାମକ ପ୍ରବନ୍ଧ ପାଠ କରିଥିଲେ ।

ଅକ୍ଟୋବର ମାସ ୬ ଓ ୭ ତାରିଖ ରାତିରେ ଶ୍ରୀରାମଚନ୍ଦ୍ର ଭବନରେ ଶ୍ରୀ ହୃଦାନନ୍ଦ ରାୟ, ଶ୍ରୀ ଗୋପବନ୍ଧୁ ରଥ, ଶ୍ରୀ କଶୋରୀ ମୋହନ ପରିଡ଼ା ପ୍ରମୁଖ ସ୍ଥାନୀୟମାନେ ସ୍ୱର୍ଗତ ଧନେଶ୍ୱର ଦାସଙ୍କ ପ୍ରଣୀତ ଖାରବେଳ ନାଟକ ଅଭିନୟ କରିଥିଲେ ।

ଡିସେମ୍ବର ୧୮ ତାରିଖ ଦିନ କବିଶେଖର ଚିନ୍ତାମଣିଙ୍କ ସ୍ମୃତି ଦିବସ ସମାରୋହରେ ପାଳିତ ହୋଇଥିଲା । ଏହା ପୂର୍ବରୁ

ଜୁଲାଇ ମାସରେ ଶତାବ୍ଦୀର ରାଜକବି ରାଧାମୋହନ ରାଜେନ୍ଦ୍ର ଦେବଙ୍କ ସ୍ମୃତି-ପୂଜାପାଇଁ ଶୋକସଭା ଆହୂତ ହୋଇଥିଲା ।

୧୯୪୪

ମେ ମାସ ୧୬ ତାରିଖରେ ଟାଉନ ହଲ୍‌ରେ ମୋ ସଭାପତିତ୍ୱରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ପାଳିତ ହୋଇଥିଲା ।

୧୯୪୬

କେତେକ ବିଜାତୀୟ ଭାବାପନ୍ନ ସଭ୍ୟ ବିଘ୍ନ ସୃଷ୍ଟି କରିବାରୁ ୧୯୪୫ ମସିହା ମେ ମାସ ୧୭ ତାରିଖଠାରୁ ଏ ବର୍ଷର ମାର୍ଚ୍ଚ ମାସ ୧୦ ତାରିଖ ପର୍ଯ୍ୟନ୍ତ ଉତ୍କଳ ୟୁନିଅନ ସାହିତ୍ୟ ସମାଜରେ ଗୋଟାଏ ନିସ୍ତବ୍ଧ ମଣ୍ଡଳ ସୃଷ୍ଟି ହୋଇ କୌଣସି କାର୍ଯ୍ୟ ହୋଇ ପାରି ନ ଥିଲା ।

ଅପ୍ରେଲ ମାସ ୪ ତାରିଖରେ କଟକ ଟାଉନ ହଲ୍‌ରେ ଶ୍ରୀ ରାଧାନାଥ ରଥଙ୍କ ସଭାପତିତ୍ୱରେ ଗୋଟିଏ ସାଧାରଣ ସଭାରେ ଗଦ୍ୟ ସାହିତ୍ୟର ଗତି ସମ୍ବନ୍ଧରେ ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ ଭାଷଣ ଦେଇଥିଲେ ।

ମେ ମାସ ୧୫ ତାରିଖରେ ସଭ୍ୟମାନେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଶ୍ରୀ କବିପ୍ରସାଦ ମହାପାତ୍ରଙ୍କ ପ୍ରଣୀତ "ମାଟିର ମୋହ" ନାମକ ନାଟକ ଅଭିନୟ କରିଥିଲେ । ଓଡ଼ିଶାର ତତ୍କାଳୀନ ପ୍ରଧାନ ମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ ଅଭିନୟର ଉଦ୍‌ଘାଟନ ଉତ୍ସବରେ ସଭାପତି ହୋଇଥିଲେ ।

ମେ ମାସ ୧୬ ତାରିଖ ଦିନ କଟକ ଟାଉନ ହଲ୍‌ରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ପାଳିତ ହୋଇଥିଲା । ମୁଁ

ଉଦ୍‌ଘାଟନ କରିଥିଲେ ଓ ଶ୍ରୀ ଅଭିବଲ୍ଲଭ ମହାନ୍ତି ପୁରୋଧା ହୋଇଥିଲେ ।

ପୁରୀ ଓ ସାକ୍ଷୀଗୋପାଳରେ ମଧ୍ୟ ଉତ୍କଳ ଯୁବ ସାହିତ୍ୟ ସମାଜର ପୁରୀ ଶାଖା ତରଫରୁ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ପାଳିତ ହୋଇଥିଲା ।

ଜୁନ ମାସ ୩୦ ତାରିଖ ଦିନ କଳିଙ୍ଗ ଭାରତୀ ଭବନରେ ମୋ ସଭାପତିତ୍ୱରେ ଗୋଟିଏ ସଭା କରାଯାଇ ଉତ୍କଳ ଯୁବ ସାହିତ୍ୟ ସମାଜର ଲକ୍ଷ୍ୟକୁ ପୂରାପୂରି ଗ୍ରହଣ କରୁ ନ ଥିବା ସଭ୍ୟମାନଙ୍କୁ ବିଦାୟ ଦିଆଯାଇଥିଲା ।

ଜୁଲାଇ ମାସ ପହିଲାରେ ନିର୍ବାଚନ ସଭା ଓ ୧୧ ତାରିଖରେ କଲେଜିଏଟ ସ୍କୁଲର ଜଣେ ଉତ୍ସାହୀ ଶିକ୍ଷକ (ଅଭିମାନ ପ୍ରହରାଜ)ଙ୍କ ମୃତ୍ୟୁରେ ଶୋକସଭା ହୋଇଥିଲା ।

ଅଗଷ୍ଟ ମାସ ୩୦ ତାରିଖରେ କଳିଙ୍ଗ ଭାରତୀ ଭବନରେ ସାହିତ୍ୟିକ ଓ ସଙ୍ଗୀତଜ୍ଞଙ୍କୁ ନେଇ ଗଣେଶ ପୂଜା ଉତ୍ସବ ଅନୁଷ୍ଠିତ ହୋଇଥିଲା ।

ସେପ୍ଟେମ୍ବର ମାସ ୧୭ ତାରିଖ ଦିନ ଶ୍ରୀରାମଚନ୍ଦ୍ର ଭବନରେ କବି-କଳହଂସ ଗୋପାଳକୃଷ୍ଣ ଜୟନ୍ତୀ ଅନୁଷ୍ଠିତ ହୋଇଥିଲା । ପାରଳାଖେମୁଣ୍ଡିର ଦକ୍ଷିଣୀ ଗୋଟିପୁଅ ଦଳ ଶୌର୍ଯ୍ୟନିକରେ ଗୋପାଳକୃଷ୍ଣ ସଙ୍ଗୀତ ପରିବେଷଣ କରିଥିଲେ । ଶ୍ରୀ ଜୟକୃଷ୍ଣ ମିଶ୍ର ଉତ୍ସବର ଉଦ୍‌ଘାଟକ ଓ ଶ୍ରୀ ଗୌରୀକୁମାର ବ୍ରହ୍ମା ପୁରୋଧା ହୋଇ ଥିଲେ ।

୧୯୪୦, ୧୯୪୫ ଓ ୧୯୪୬ ମସିହାରେ ଉତ୍କଳ ଯୁବ ସାହିତ୍ୟ ସମାଜର ପ୍ରାରମ୍ଭିକ ଅବସ୍ଥା । ସମାଜର ହିସାବଖାତାରୁ ଦେଖାଯାଏ ଯେ ଉତ୍କଳର ଅତୀତ ସାରସ୍ୱତ ଗୌରବର ଉଦ୍ଧାର

ନିମନ୍ତେ ଅପୂର୍ବ ଉତ୍ସାହରେ ଉନ୍ମାଦିତ ହୋଇ ତରୁଣ ଛାତ୍ରମାନେ ସମାଜ କର୍ତ୍ତୃକ ବର୍ଦ୍ଧନ ସାରମ୍ଭିତ ଉତ୍ସବ ଓ ନାଟକମାନଙ୍କର ଅଭିନୟ ନିମନ୍ତେ ଯାବତୀୟ ଟଙ୍କା ନିଜେ ନିଜେ ଦେଇଅଛନ୍ତି ଓ ସେମାନଙ୍କର ଆତ୍ମନିର୍ଭରଶୀଳ ମନୋବୃତ୍ତିବଶତଃ ପ୍ରତିଷ୍ଠାତା-ସଭାପତିରୂପେ ଧନ ନିମନ୍ତେ ମୋତେ କୌଣସି ଦିନ ମୁଣ୍ଡ ଦୂରାଇବାକୁ ପଡ଼ିନାହିଁ ।

"ମାଟିର ମୋହ" ନାମକ ଅଭିନୟ ସଂପର୍କରେ ତେତେବେଳେ **Orissa First** ନାମକ ସାପ୍ତାହିକ ଇଂରାଜୀ ପତ୍ରିକା (ସଂପାଦକ ଶ୍ରୀ କେ. ଏନ୍, ଅଗ୍ରୱାଲ)ରେ ନିମ୍ନଲିଖିତ ବିବରଣୀ ପ୍ରକାଶ ପାଇଥିଲା —

"The members of the 'Utkal Chhatra Sahitya Samaj' put on board 'Matira Moha' a social drama by Sri Kabi Prasad Mohapatra at the Annapurna Theatre before a large and distinguished audience of ladies and gentlemen. The Hon'ble Sri H. K. Mahatab Prime Minister, the Hon'ble Sri N. K. Chaudhuri, Revenue Minister and his wife Srimati Malati Devi graced the occasion with their presence.

Sriman Hrudananda Ray, Secretary of the Samaj welcomed the Premier and his Honourable colleague and Srimati Malati Devi and asked their blessing in course of a nice little speech. Sriman Gopabandhu Rath introduced the actors one by one after which the Hon'ble Prime

Minister addressed the audience and the student actors in an extempore speech exhorting the students to keep up the habit of writing everyday, so that in course of time they might become reputed writers. That was always a habit with him,continued the speeker,and added that he came to know three years back in jail that the 'Utkal Chhatra Sahitya Samaj' was ushered into existence through the efforts of Sri Bichhanda Charan Patnaik. Ever since, the Premier said he had been watching the progress of the Samaj. There was, thereforé, no need of apprehension that their organization was not sufficiently known."

ଅଦ୍ୟରୁ ଉତ୍କଳ ଛାତ୍ର ସାହିତ୍ୟ ସମାଜ କର୍ତ୍ତୃକ ଅନୁଷ୍ଠିତ ଉତ୍ସବ ଓ ସଭାମାନଙ୍କୁ ବରାବର ଆଶାତିରିକ୍ତ ଭାବରେ ବିରାଟ ଜନସମାଗମ ହୋଇ ଆସିଅଛି । ବିଶୁଦ୍ଧ ଜାତୀୟତାର ଦେଶବାସୀଙ୍କ ମନଉପରେ ଯେଉଁ ଦୁର୍ଲଙ୍ଘ୍ୟ ଆବେଦନ, ତାହାହିଁ ଏହାର କାରଣ ବୋଲି ମୋର ବିଶ୍ୱାସ ।

## ୧୯୪୭

ମାର୍ଚ୍ଚ ମାସ ୨୩ ଓ ୨୪ ତାରିଖ ଦିନ ସାଧାରଣ ସଭା ହୋଇ ପ୍ରତିଷ୍ଠାତା-ସଭାପତି ରୂପେ ମୋ ହାତରେ ସମାଜକୁ ଦୃଢ଼କରି ଗଢ଼ିବା ନିମନ୍ତେ ଚୂଡ଼ାନ୍ତ କ୍ଷମତା ନ୍ୟସ୍ତ କରାଯାଇଥିଲା ।

ମେ ମାସ ୧୬ ତାରିଖ ଦିନ ଓ ୧୭ ତାରିଖ ଦିନ କଟକ ଟାଉନ ହଲ୍‌ରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ପାଳିତ

ହୋଇଥିଲା । ପ୍ରଥମ ଦିନ ଶ୍ରୀ ଚନ୍ଦ୍ରମଣି ଅଗ୍ରୟୀ ପୁରୋଧା ଓ ଶ୍ରୀ ରାଧାନାଥ ରଥ ପ୍ରଧାନ ବକ୍ତା ହୋଇଥିଲେ ।

ଦ୍ୱିତୀୟ ଦିନ ମୁଁ ପୁରୋଧା ହୋଇଥିଲି ।

ଉତ୍କଳ ଯୁବକ ସାହିତ୍ୟ ସମାଜର ପୁରୀ ଶାଖା ପକ୍ଷରୁ ମଧ୍ୟ ସ୍ୱର୍ଗତ ଜଗବନ୍ଧୁ ସିଂହଙ୍କ ସଭାପତିତ୍ୱରେ ସ୍ୱର୍ଗତ ଦେଓ୍ୱାନ-ବାହାଦୁର ଦୟାନିଧି ଦାସଙ୍କ ପ୍ରାସାଦରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ପାଳିତ ହୋଇଥିଲା ।

ଏ ମାସ ୧୮ ତାରିଖରେ ନିର୍ବାଚନ ସଭା ହୋଇଥିଲା ।

୧୮ । ୫ । ୪୭ ତାରିଖର ଦୈନିକ "ସମାଜ"ରେ ପ୍ରକାଶିତ ବିବରଣୀର କିୟଦଂଶ ଏଠାରେ ସମସ୍ତଙ୍କର ମନନଯୋଗ୍ୟ:—

ସମାଜ ସମ୍ପାଦକ ଶ୍ରୀ ରାଧାନାଥ ରଥ ଭାଷଣ ଦେଇ ପ୍ରଥମେ ଉପେନ୍ଦ୍ର ଭଞ୍ଜଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରି ପ୍ରାଚୀନ ସାହିତ୍ୟର ଭାଷା ଓ ଆଧୁନିକ ସାହିତ୍ୟର ଭାଷାକୁ ତୁଳନା କରି କହିଥିଲେ ଯେ ପ୍ରାଚୀନ ସାହିତ୍ୟ ତୁଳନାରେ ବର୍ତ୍ତମାନ ସମୟର ସାହିତ୍ୟିକମାନଙ୍କ ଲେଖାରେ ଭାଷାର ଦୈନ୍ୟ ପ୍ରକାଶ ପାଉଅଛି । ଆଧୁନିକ ବିଶିଷ୍ଟ ସାହିତ୍ୟିକମାନେ ଯେଉଁଭଳି ଭାଷା ବ୍ୟବହାର କରୁଅଛନ୍ତି, ତା ସହିତ ଓଡ଼ିଶାର ପାରିପାର୍ଶ୍ୱିକ ଅବସ୍ଥାର ସମ୍ପର୍କ ନାହିଁ ଏବଂ ସେସବୁ ଭାଷା ଅନ୍ୟାନ୍ୟ ପ୍ରାଦେଶିକ ଭାଷା ଓ ବୈଦେଶିକ ସାହିତ୍ୟରୁ ନକଲ କରାଯାଉଛି । ଏଇଥିରୁ ଆମ ସାହିତ୍ୟିକମାନଙ୍କର ଦୈନ୍ୟ ସ୍ପଷ୍ଟ ଜଣା ପଡ଼ୁଯାଉଛି । ଆଧୁନିକ ସାହିତ୍ୟିକମାନେ ଯେଉଁ ଭାବକୁ ପ୍ରକାଶ କରିବାପାଇଁ ଅନ୍ୟ ଭାଷାରୁ ଶବ୍ଦ ନକଲ କରୁଅଛନ୍ତି, ସେହିସବୁ ଭାବକୁ ପ୍ରାଚୀନ କବିମାନେ କିପରି ସୁନ୍ଦର ସୁଲଳିତ ଭାଷାରେ ପ୍ରକାଶ କରୁଥିଲେ, ତାର ସେ କେତୋଟି ସୁନ୍ଦର ଦୃଷ୍ଟାନ୍ତ

ଦର୍ଶାଇଥିଲେ । ପ୍ରାଚୀନ ସାହିତ୍ୟକୁ ଆଧୁନିକ ଲେଖକମାନେ ଚର୍ଚ୍ଚା କରୁ ନ ଥିବାରୁ ତହିଁରେ ଦୁଃଖ ପ୍ରକାଶ କରି ପରମ୍ପରାହୀନ ହେଲେ ଓଡ଼ିଆ ସାହିତ୍ୟର ସତ୍ତା ରହିବ ନାହିଁ ବୋଲି ସେ ମତ ପ୍ରକାଶ କରିଥିଲେ ।

ସଭାପତି ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ କହିଲେ, 'ପ୍ରଥମେ ସ୍ୱର୍ଗୀୟ ବିଜୟ ଚନ୍ଦ୍ର ମଜୁମଦାର ଉଲ୍ଲେଖ କରିଥିଲେ ଯେ ଭଞ୍ଜ ସାହିତ୍ୟ କ୍ଲିଷ୍ଟ ଓ ଅଶ୍ଳୀଳ । ମାତ୍ର ସେ ନିଜେ ଏହି ସାହିତ୍ୟକୁ ଗବେଷଣା କରିବାର ସୁବିଧା ନ ପାଇ ଏଭଳି ମତ ପ୍ରକାଶ କରିଥିବାର ଖୁବ୍ ସମ୍ଭବ । ଭଞ୍ଜ-ସାହିତ୍ୟରେ ଅଶ୍ଳୀଳ ଭାବ ରହିଛି ବୋଲି ଯଦି କୁହାଯାଏ, ତାହାହେଲେ କାଳିଦାସଙ୍କ ସାହିତ୍ୟ ମଧ୍ୟ ସେହି ଦୋଷରେ ଦୁଷ୍ଟ ହେବ । ତା ପରେ ଓଡ଼ିଆ ସାହିତ୍ୟିକମାନେ ପ୍ରାଦେଶିକ ଭାଷାମାନଙ୍କରୁ ଯେ ଭଳି ଅବାଧଭାବରେ ଶବ୍ଦ ଘେନି ଆସି ଆମ ସାହିତ୍ୟରେ ଚଳାଇ ଦେବାକୁ ଉଦ୍ୟମ କରୁଅଛନ୍ତି, ତାକୁ ସେ ନିନ୍ଦା କରିଥିଲେ ଏବଂ ପ୍ରାଚୀନ ସାହିତ୍ୟ ସଙ୍ଗେ ସଙ୍ଗେ ମଧ୍ୟଯୁଗର ସାହିତ୍ୟ ତଥା ଆଧୁନିକ ସାହିତ୍ୟର ଚର୍ଚ୍ଚା କରିବା ଓ ସେହି ଅନୁସାରେ ସାହିତ୍ୟ ସୃଷ୍ଟି କରିବା କର୍ତ୍ତବ୍ୟ ବୋଲି ମତ ପ୍ରକାଶ କରିଥିଲେ ।

ଅଗଷ୍ଟ ୧୫ ତାରିଖ ଦିନ କଳିଙ୍ଗ ଭାରତୀ ଭବନରେ ମୁଁ ଜାତୀୟ ପତାକା ଉତ୍ତୋଳନ କରିଥିଲି ଓ ସଭ୍ୟମାନେ ଅନେକ ଗୁଡ଼ିଏ ଓଡ଼ିଆ ପରମ୍ପରାବିରୋଧୀ ସାହିତ୍ୟ ପୁସ୍ତକ ଅଗ୍ନିମୁଖରେ ନିକ୍ଷେପ କରିଥିଲେ ।

ସେପ୍ଟେମ୍ବର ମାସ ୨୦ ଓ ୨୧ ତାରିଖରେ କଟକ ଟାଉନ ହଲ୍‌ରେ ଓ ୨୨ ତାରିଖରେ ଓଡ଼ିଶା ଥିଏଟର ମଞ୍ଚରେ ଯଥାକ୍ରମେ ଶ୍ରୀ ଅଭିବଲ୍ଲଭ ମହାନ୍ତି, ମୁଁ ( ଶ୍ରୀ ବଇକୁଣ୍ଠଚରଣ

ପଟ୍ଟନାୟକ ) ଓ ପ୍ରଧାନ ମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବଙ୍କ ପୌରୋହିତ୍ୟରେ ଜନପଦବ୍ୟାପୀ ବିରାଟ ସଭା ହୋଇଥିଲା ।

ଛାନ୍ଦ ଓ ରାଗରାଗିଣୀ ଓଡ଼ିଆ ଜାତିର ପ୍ରାଣର ବସ୍ତୁ । ଏ ସବୁକୁ ଛାଡ଼ି ମାତ୍ରାବୃତ୍ତ ବା ମୁକ୍ତ ଛନ୍ଦକୁ ପ୍ରଚଳନ କରିବାର ଯେଉଁ ଉଦ୍ୟମ ହେଉଅଛି, ତାହାର ଅସାରତା ଓ ମାରାତ୍ମକତା ପ୍ରତିପାଦନ କରିବା ପାଇଁ ଏ ଆୟୋଜନ କରାଯାଇଥିଲା ।

ଏଥିରେ ନିର୍ଦ୍ଧାରିତ ହୋଇଥିଲା ଯେ "ବଙ୍ଗଳା ବା ହିନ୍ଦୀକୁ ଅନୁକରଣ କରି ଆଧୁନିକ କବିମାନେ ଯେଉଁ ଛନ୍ଦରେ କବିତା ଲେଖୁ ଅଛନ୍ତି, ତାହା ହଲନ୍ତ ବହୁଳ ଉକ୍ତ ସାହିତ୍ୟମାନଙ୍କ ପାଇଁ ଉପଯୋଗୀ ହୋଇପାରେ; କିନ୍ତୁ ଓଡ଼ିଆରେ ତାକୁ ଚଳାଇବାର ପ୍ରଚେଷ୍ଟା ନିତାନ୍ତ ଅସଙ୍ଗତ ଓ ଯେଉଁ ଧାରାରେ ଅବହମାନ କାଳରୁ ଓଡ଼ିଆ କବିତା ଲେଖା ହୋଇଅସୁଛି ତାହାର ବିରୋଧୀ । ଏହି କାରଣରୁ ଏ ବୃତ୍ତରେ ଲିଖିତ କବିତା ଓଡ଼ିଶାର ଗଣ-ସାହିତ୍ୟ ହୋଇପାରି ନାହିଁ ବା କୌଣସି କାଳେ ହୋଇ ପାରିବ ନାହିଁ । ଓଡ଼ିଆ ଲୋକଙ୍କ ଅନ୍ତରକୁ ଛୁଇଁଲା ଭଳି ଛାନ୍ଦ ଓ ଚଉପଦୀ ଇତ୍ୟାଦି ଜନପ୍ରିୟ କବିତାରେ ଯେଉଁ ଆବେଦନ ଅଛି, ଏ କବିତାରେ ତାହା ନାହିଁ । ତେଣୁ ନିଜର କୃଷ୍ଟିକୁ ଛାଡ଼ି ଅକାରଣରେ ପରମୁଖାପେକ୍ଷୀ ହେବା ଆତ୍ମହତ୍ୟା ଛଡ଼ା ଆଉ କିଛି ନୁହେ । ପ୍ରାଚୀନ ଓଡ଼ିଆ ଛାନ୍ଦ ଓ ରାଗରାଗିଣୀଯୁକ୍ତ କ୍ଷୁଦ୍ର କବିତା ବା ସଙ୍ଗୀତର ରୀତି ଆଧୁନିକ କବିତାରେ ସର୍ବତୋ-ଭାବରେ ଅବଲମ୍ବନ କରାଯିବା ଉଚିତ ।"

—ଶ୍ରୀ ଅର୍ତ୍ତବଲ୍ଲଭ ମହାନ୍ତି

ଛନ୍ଦର

"ଅତି ପ୍ରାଚୀନ କାଳରୁ ଗଣ୍ଡି-ସାହିତ୍ୟ ସ୍କନ୍ଧ ନାମକ ଯେଉଁ ଛନ୍ଦରେ ଲେଖା ଯାଉଥିଲା, ଓଡ଼ିଆ ଛନ୍ଦର ମୂଳ ହେଉଛି ତାହା । ଓଡ଼ିଶାରେ କାବ୍ୟ କବିତା ଲେଖିବା ପାଇଁ ଛନ୍ଦହିଁ ପ୍ରକୃଷ୍ଟ ପଦ୍ଧତି ।"

—ଶ୍ରୀ ବାନାମ୍ବର ଆଚାର୍ଯ୍ୟ

"କୋଣାର୍କ ଶିଳ୍ପରେ ଯେପରି ବରିଷ୍ଠତା ସହିତ କମନୀୟତା ଏକାଧାରରେ ପ୍ରକାଶ ପାଇଅଛି, ଓଡ଼ିଶାର ଜାତୀୟ ସାହିତ୍ୟରେ ସେହିପରି ବରିଷ୍ଠତା ସହିତ କମନୀୟତା ଏକାଧାରରେ ପ୍ରକଟିତ ହୋଇଅଛି । ସେହି କଳାପ୍ରାଣ ଓ ବରିଷ୍ଠ ଐତିହ୍ୟବିଶିଷ୍ଟ ଓଡ଼ିଆ ଜାତିର ବଂଶଧରରୂପେ ଆଧୁନିକ କବିମାନେ ନିଜ ଜାତୀୟ ସମ୍ପଦ ପ୍ରତି ଅବହେଳା ଦେଖାଇ ଛନ୍ଦ ନିମନ୍ତେ ପରଦ୍ୱାରସ୍ଥ ହେଉଅଛନ୍ତି ଏବଂ ତଦ୍ଦ୍ୱାରା ନିଜର ଓ ଦେଶର ଭବିଷ୍ୟତ ପ୍ରତି ଘୋର ଅନ୍ୟାୟ କରୁଅଛନ୍ତି । ଏ ସ୍ରୋତର ଗତି ନ ବଦଳିଲେ ଓଡ଼ିଆ ଜାତୀୟତାର ପୂର୍ଣ୍ଣ ଆତ୍ମପ୍ରତିଷ୍ଠା ହେବ ନାହିଁ । ତେଣୁ ମାତ୍ରାବୃତ୍ତର ଅନୁକରଣ ଆମ ଜାତୀୟତା ପକ୍ଷରେ ଅପମାନଜନକ ଓ ମାରାତ୍ମକ ।"

—ଶ୍ରୀ ହୃଦାନନ୍ଦ ରାୟ

"ଖ୍ରୀଷ୍ଟ ତ୍ରୟୋଦଶ ଶତାବ୍ଦୀ ବେଳକୁ ଓଡ଼ିଆ ସାହିତ୍ୟ ଛନ୍ଦୋମୟ ଓ ସଙ୍ଗୀତମୟ ହୋଇ ଉଠିଥିଲା । ବଚ୍ଛ ଦାସଙ୍କ କଳସା ଚଉତିଶା ସେହି ସମୟର । ତା ପରେ ଦୁଇ ତିନି ଶତାବ୍ଦୀ ମଧ୍ୟରେ ଓଡ଼ିଶାର ସଙ୍ଗୀତପ୍ରାଣ କବିମାନେ କଳସା ଛନ୍ଦ ପରି ଶହ ଶହ ଛନ୍ଦ ଓ ସଙ୍ଗୀତ ରଚନା ପାଇଁ ଅଗଣିତ ରାଗ-ରାଗିଣୀ ସୃଷ୍ଟି କରି ସାହିତ୍ୟକୁ ମୂର୍ଚ୍ଛନାମୟ କରି ପକାଇଥିଲେ ।

କବି ଦୀନକୃଷ୍ଣ ଦାସ ରସକଲ୍ଲୋଳ ଲେଖିଲାବେଳକୁ ପୂର୍ବତନ କବି ବୈଷ୍ଣବମାନଙ୍କ ଦ୍ୱାରା ଅଧିକାଂଶ ରାଗରାଗିଣୀ ସୃଷ୍ଟି ହୋଇ ସାରିଥିଲା ଓ ଛାନ୍ଦମାନଙ୍କ ସହିତ ସେ ସବୁ ଓଡ଼ିଶାର ଜାତୀୟ ସମ୍ପଦରେ ପରିଣତ ହୋଇଥିଲା । ରସକଲ୍ଲୋଳର ପଦଯୋଜନା ଲାଳିତ୍ୟ ଓ ମୂର୍ଚ୍ଛନାରେ ସଙ୍ଗୀତର ବିରାଟ ମନ୍ଦିର ସଂସ୍ଥାପିତ ହେଲା । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ସପ୍ତଦଶ ଶତାବ୍ଦୀର ଶେଷ ଭାଗକୁ ଆସିଲା ବେଳକୁ ଦୀନକୃଷ୍ଣଙ୍କ ଆଦର୍ଶରେ ଆହୁରି ବହୁ କବି ସଙ୍ଗୀତମୟ ବା ଛାନ୍ଦମୟ କାବ୍ୟ କବିତ ରଚନା କରିଥିଲେ । ଭଞ୍ଜ ସେ ସବୁର ଦାୟାଦ ହେଲେ ଓ ଅପୂର୍ବ କଳାମଞ୍ଜୁଳ କାବ୍ୟମାନ ଲେଖି ମହା ପ୍ରତିଭାର ଚରମୋତ୍କର୍ଷ ଦେଖାଇ ଗଲେ । ଅଭିମନ୍ୟୁ ସାମନ୍ତ ସିଂହାର, ବଳଦେବ ରଥ ଓ ଗୋପାଳକୃଷ୍ଣାଦିଙ୍କ ଆବିର୍ଭାବ ଫଳରେ ଓଡ଼ିଶା ସାହିତ୍ୟର ଛନ୍ଦ ଉତ୍କ୍ଷୋଳ ସମୁଦ୍ରରେ ପରିଣତ ହେଲା । ଏଥିରେ ଭିଙ୍ଗା ପକାଇ ଦେଲେ ରାଧାନାଥ ରାୟ । ବଙ୍ଗାନୁକରଣରେ ସେ ଅନୁଗାମୀ-ମାନଙ୍କ ସହ ଇଂରାଜି ବୃତ୍ତମାନଙ୍କୁ ନିଜର ଆଦର୍ଶ କଲେ । ରବୀନ୍ଦ୍ରଙ୍କର ନିଷ୍ଫଳ ଅନୁକରଣ କରି ସବୁଜ କବିମାନେ ପୁଣି ଶୃଙ୍ଖଳାହୀନ ମୁକ୍ତ ଛନ୍ଦ ପ୍ରଚଳନ କଲେ । ଶିକ୍ଷା ବିଭାଗ ଅତ୍ୟାଧୁନିକ ପନ୍ଥୀ ଦଳଙ୍କ ହାତରେ ରହିବାରୁ ଶିକ୍ଷିତ ମହଲ ମନୋହର ଜାତୀୟ ଛନ୍ଦର ଆସ୍ୱାଦ ପାଇ ପାରିଲେ ନାହିଁ । ଏ ବିଜାତୀୟତାର ମାରାତ୍ମକ ସୁଅକୁ ରୋକିବା ନିମନ୍ତେ କଳିଙ୍ଗ ଭାରତୀ ଓ ଉତ୍କଳ ଯୁବ ସାହିତ୍ୟ ସମାଜ ସ୍ଥାପିତ ହୋଇଅଛି ।"

—ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ

ରାଧାନାଥ ପ୍ରାଚୀନ ସାହିତ୍ୟ ଦ୍ୱାରା ନିଜକୁ ପ୍ରଭାବିତ ହେବାର ସୁଯୋଗ ନ ଦେବାଫଳରେ ଓଡ଼ିଆ ସାହିତ୍ୟର ପରମ୍ପରାଚ୍ଛେଦ ହେଲା । ଗଣ-ସାହିତ୍ୟ ବୈଷ୍ଣବ ପାଣିଙ୍କ ହାତରେ ରହିଲା । ହମିଦ ମିଆଁଙ୍କ ବହି ସମସ୍ତଙ୍କ ପାଖରେ ପହଞ୍ଚିଲା; କିନ୍ତୁ ଶିକ୍ଷିତ କବିମାନଙ୍କ କାବ୍ୟକବିତା ମୁଷ୍ଟିମେୟ ଶିକ୍ଷିତଙ୍କ ମଧ୍ୟରେ ରହିଲା । ପ୍ରାଚୀନ ଛନ୍ଦର ଉପାସକ ରୂପେ ଉତ୍କଳମଣି ଯେଉଁ ବଳିଷ୍ଠ ଗଦ୍ୟସାହିତ୍ୟ ସୃଷ୍ଟି କଲେ ତା ଏତେ ଭାବପ୍ରକାଶକ ଓ ଶକ୍ତିଶାଳୀ ହେଲା କାରଣ ତହିଁର ପ୍ରାଚୀନ ସାହିତ୍ୟର ଉଦ୍ଧୃତାଂଶ-ମାନ ଛନ୍ଦେ ଛନ୍ଦେ ମିଶି ରହିଥିଲା । ସ୍ୱର୍ଗତ କବି ବାଞ୍ଛାନିଧି ମହାନ୍ତି ପ୍ରାଚୀନ ରାଗରାଗିଣୀର ଆଶ୍ରୟ ନେଇ ଜାତୀୟ କବିତା ଲେଖିବା ଫଳରେ କଂଗ୍ରେସର ବାର୍ତ୍ତା ବ୍ୟାପକଭାବରେ ପ୍ରକାଶ ଲାଭ କରିଥିଲା । ବର୍ତ୍ତମାନ ସେହି ପ୍ରାଚୀନ ରାଗରାଗିଣୀରେ ସଂସ୍କୃତପ୍ରଭାବମୁକ୍ତ ସରଳ ଖାଣ୍ଟି ଓଡ଼ିଆ ପଦ ଯୋଜନା କରି କାବ୍ୟକବିତା ଲେଖିଲେ ସାହିତ୍ୟ-ସୃଷ୍ଟିର ସାର୍ଥକତା ହେବ ଓ ଜାତୀୟ ଜାଗରଣର ସୁବିଧା ହେବ । ଯେଉଁମାନେ ରବୀନ୍ଦ୍ର ଛନ୍ଦରେ କବିତା ଲେଖନ୍ତି, ସେମାନେ କେହି ଜଣେ ସେଇ ଆଦର୍ଶ ପାଳନ କରି ପାରନ୍ତି ନାହିଁ । ତାଙ୍କ ଶବ୍ଦର ଅର୍ଥ କେହି କେହି ଆଦୌ ବୁଝନ୍ତି ନାହିଁ ।

—ଶ୍ରୀ ହରେକୃଷ୍ଣ ମହତାବ

ଅକ୍ଟୋବର ମାସ ୬ ଓ ୭ ତାରିଖରେ ଦୀନକୃଷ୍ଣ ଜୟନ୍ତୀ ପାଳିତ ହୋଇଥିଲା । ମୁଁ ( ଶ୍ରୀ ବଇଷ୍ଣବଚରଣ ପଟ୍ଟନାୟକ ) ପ୍ରଥମ ଦିନ ସଭାପତି ହୋଇଥିଲି ଓ ଶ୍ରୀ କାଳୀଚରଣ ପଟ୍ଟନାୟକ ଦ୍ୱିତୀୟ ଦିନ ସଭାପତି ହୋଇଥିଲେ ।

ନଭେମ୍ବର ମାସ ୨୦ ଓ ୨୧ ତାରିଖରେ ସକଳପ୍ରକାର ବିଜାତୀୟତାର ମୂଳୋତ୍ପାଟନ କରି ଉତ୍କଳୀୟ ପରମ୍ପରାସମ୍ମତ ସାହିତ୍ୟ ଓ କଳା ସୃଷ୍ଟି କରିବାର ଲକ୍ଷ୍ୟ ପ୍ରତିପାଦିତ କରିବାପାଇଁ ମୋ ସଭାପତିତ୍ୱରେ ଟାଉନ ହଲ୍‌ରେ ସାଧାରଣ ସଭା ହୋଇଥିଲା । ପୁରୀ ଶାଖାର ସଭ୍ୟମାନେ ଏଥିରେ ଭାଗ ନେଇଥିଲେ ।

## ୧୯୪୮

ମେ ମାସ ୧୬ ତାରିଖରୁ ୨୦ ତାରିଖ ପର୍ଯ୍ୟନ୍ତ ୫ଦିନ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ପାଳିତ ହୋଇଥିଲା । ମୁଁ ଉତ୍ସବ ଉଦ୍‌ଘାଟନ କରିଥିଲି ଏବଂ ୧୯ ଓ ୨୦ ତାରିଖଦିନ ପୁରୋଧା ହୋଇଥିଲି । ଅନ୍ୟାନ୍ୟ ଦିନ ଯଥାକ୍ରମେ ପୁରୋଧା ହୋଇଥିଲେ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ଶ୍ରୀ ଭିକାରୀଚରଣ ପଟ୍ଟନାୟକ ଓ ଶ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ର ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ୧୬ ଓ ୧୭ ତାରିଖରେ ପୁରୀ ଶାଖା ତରଫରୁ ପୁରୀଠାରେ ପାଳିତ ହୋଇଥିଲା । ସ୍ୱର୍ଗତ ଜଗବନ୍ଧୁ ସିଂହ ପୁରୋଧା ହୋଇଥିଲେ ।

ଜୁଲାଇ ମାସ ୨୪ ତାରିଖରେ ଛନ୍ଦ ଓ ଯନ୍ତ୍ରଯୁଗ ଶୀର୍ଷକ ଆଲୋଚନା ପାଇଁ କଟକ ଟାଉନ ହଲ୍‌ରେ ମୋ ସଭାପତିତ୍ୱରେ ସାଧାରଣ ସଭା ହୋଇଥିଲା । ଯନ୍ତ୍ରଯୁଗରେ ଛନ୍ଦରେ କବିତା ଲେଖିବା ନିଷ୍ଫଳ ବୋଲି ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ ନନ୍ଦକିଶୋର ସ୍ମୃତି-ସଭାରେ ମତପ୍ରକାଶ କରିଥିବାରୁ ତାହାଁର ଅସାରତା ପ୍ରତିପାଦନ କରାଯାଇଥିଲା ।

ଅକ୍ଟୋବର ମାସ ୫ ଓ ୬ ତାରିଖ ଦିନ ଦୀନକୃଷ୍ଣ ଜୟନ୍ତୀ ଯଥାକ୍ରମେ ଶ୍ରୀ ଭିକାରୀଚରଣ ପଟ୍ଟନାୟକ ଓ ମୋ ସଭାପତିତ୍ୱରେ କଟକ ଟାଉନ ହଲ୍‌ରେ ପାଳିତ ହୋଇଥିଲା ।

ପ୍ରଧାନ ମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବଙ୍କ ଶୁଭେଚ୍ଛାପତ୍ର ଅନୁକୂଲ୍ୟରେ ଉତ୍କଳ ଯୁବ ସାହିତ୍ୟ ସମାଜର ସଭ୍ୟମାନଙ୍କ ଲିଖିତ ସନ୍ଦର୍ଭ ଓ ସଙ୍ଗୀତ ସମୂହକୁ ଅଦ୍ୟ ଅର୍ଘ୍ୟ ନାମରେ ସରକାରଙ୍କ ଲୋକସମ୍ପର୍କ ବିଭାଗ ଦ୍ୱାରା ଆନୁମାନିକ ଅନ୍ୟୁନ ୫୪୦୦ ବ୍ୟୟରେ ମୁଦ୍ରିତ ଓ ପ୍ରକାଶିତ ହୋଇଥିଲା । ପୁସ୍ତକର ସମସ୍ତ ସ୍ୱତ୍ୱ ଉତ୍କଳ ଯୁବ ସାହିତ୍ୟ ସମାଜ ପାଇଥିଲେ ।

୧୯୪୭ ଓ ୪୮ ପରିଷଦମାନଙ୍କରେ ଶ୍ରୀ ହରେକୃଷ୍ଣ ମହତାବଙ୍କ ଉପରୋକ୍ତ ଦାନ ଛଡା ଶ୍ରୀ ମଦନଲାଲ ଜାଜୋଡ଼ିଆ, ଏମାର ମଠର ମହନ୍ତ ମହାରାଜ ବଡ଼ଅଖଡ଼ା ମଠର ମହନ୍ତ ମହାରାଜ, ଶ୍ରୀ ଶରତଚନ୍ଦ୍ର ମହାରଣା, ଶ୍ରୀମତୀ ଗୋଦାବରୀ ଦେବୀ, ଶ୍ରୀ ମୋତିଲାଲ ପଣ୍ଡିତ, ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ, ଶ୍ରୀ ଭିକାରୀଚରଣ ପଟ୍ଟନାୟକ, ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, ସ୍ୱାମୀ ଶ୍ରୀ ବିଚିତ୍ରାନନ୍ଦ ଦାସ, ଶ୍ରୀ ଅଶୋକ ଦାସ, ଶ୍ରୀ ବିଶ୍ୱନାଥ ପଣ୍ଡାଏତ, ଶ୍ରୀ କାଶୀନାଥ ଦାସ, ଶ୍ରୀ ହରିହର ମହାପାତ୍ର ପ୍ରଭୃତି ସାହିତ୍ୟପ୍ରେମୀ ମହୋଦୟଗଣ ଉତ୍କଳ ଯୁବ ସାହିତ୍ୟ ସମାଜକୁ ଅର୍ଥ ସାହାଯ୍ୟ କରିଥିଲେ ।

ଯୁବମାନଙ୍କ ପ୍ରଦତ୍ତ ଧନର ଏହା କିଞ୍ଚିତ ପରିପୂରକ ହୋଇଥିଲା ।

## ୧୯୪୯

ମେ ମାସ ୧୦ ତାରିଖଠାରୁ ୧୬ ତାରିଖ ପର୍ଯ୍ୟନ୍ତ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ସପ୍ତାହ କଟକ ଶ୍ରୀ ରାମଚନ୍ଦ୍ର ଭବନ ଓ ଟାଉନ ହଲ୍‌ରେ ସମାରୋହରେ ପାଳିତ ହୋଇଥିଲା । ମୁଁ ଉଦ୍‌ଘାଟନ କରିଥିଲି ଓ ଷଷ୍ଠ ଓ ସପ୍ତମ ଦିନ ପୁରୋଧା ହୋଇଥିଲି । ଅନ୍ୟାନ୍ୟ ଦିବସମାନଙ୍କରେ ଯଥାକ୍ରମେ ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, ଶ୍ରୀ ଭିକାରୀଚରଣ ପଟ୍ଟନାୟକ, ଶ୍ରୀ ରାଧାନାଥ ରଥ, ସିଂହାରୀ

ଶ୍ରୀ ଶ୍ୟାମସୁନ୍ଦର କର, ଶ୍ରୀ ଜୟକୃଷ୍ଣ ମିଶ୍ର ପୁରୋଧା ହୋଇଥିଲେ । ଏହି ବର୍ଷଠାରୁ ପ୍ରବଳ ଜନମତର ତାଡ଼ନାରେ କବିସମ୍ରାଟ ଜୟନ୍ତୀ ସପ୍ତାହବ୍ୟାପୀ ହେବାର ଆରମ୍ଭ ହେଲା ।

୧୬ ତାରିଖ ଦିନ ପୁରୀ ଓ ଦଗଡ଼ହେଣ୍ଡିରେ ଭଞ୍ଜଜୟନ୍ତୀ ମହୋତ୍ସବ ପରିପାଳିତ ହୋଇଥିଲା ।

ଏ ଭଞ୍ଜଜୟନ୍ତୀ ଉତ୍ସବ ସମ୍ପର୍କରେ “ Orissa First ” ଇଂରାଜୀ ସାପ୍ତାହିକ ପତ୍ରିକାର ସମ୍ପାଦକୀୟ ସ୍ତମ୍ଭରେ ନିମ୍ନଲିଖିତ ମତେ ମନ୍ତବ୍ୟ ପ୍ରକାଶ ପାଇଥିଲା ।

‘‘We congratulate the Kalinga Bharati of which Sri Bichhanda Charan Patnaik, scholar, poet and research-worker in Oriya language and literature is the Founder-President, and Secretary and members of the Utkal Chhatra Sahitya Samaj on the tremendous enthusiasm and, we hope, the lasting impression which they created in every Oriya heart when they celebrated with reverence and enthusiasm so successfully the Upendra Bhanja Week from 9th to 16th of May at Sri Rama Chandra Bhaban and the Town Hall. Upendra Bhanja is acclaimed and rightly so as the greatest Oriya epic-poet, and singer, ancient and modern. In range of intellect, mastery of language, sweetness of his songs, artistry in words and beauty of expression, loftiness of his themes and

nobility of thought Bhanja was unequalled. He was really a Kabi-samrat. His works are masterpieces of purest ray serene and would have indeed captured world-wide imagination had they been translated into English and other foreign languages. Alas there was no Sir William Jones or H. H. Wilsons to do the service to Bhanja and to Oriya literature as they did to Sanskrit literature. There was no Yeats to introduce Bhanja to the English-knowing world as Rabindranath was fortunate to have. Even the few English savants who ought to know better had damned Bhanja with faint praise or had wilfully misrepresented and misjudged Bhanja's marvellous and many-sided genius. It is understood that it will be the mission of Kalinga Bharati and of Sri Bichhanda Charan Patnaik, its Founder-Presidet to bring out a "Bhanja Souvenir" containing select pieces from the master's works translated into English in order that a wider public may know the treasures contained in them. Eventully it is the intention of this institution to translate the important works of not only Bhanja but also of other Oriya literary figures like Dinakrushna, Abhimanyu, Kabisurjya, Jagannath Das and others. This laudable task if completed by

competent hands like those of Sri Patnaik will undoubtedly enrich world-literature.

Sri Chintamani Achariya the erudite Vice-Chancellor of Utkal University inaugurated the celebrations on the opening day at Sri Rama-chandra Bhaban with a learned speech on the greatness of Kabi-samrat. He said that every Oriya should take réal pride in the rich heritage which Bhanja has left them and carry on undimmed the Bhanja tradition. On the succeeding days Sri Bichhanda Charan Patnaik, Sri Hrudananda Ray,Simhari Sri Shyamasundar Kar, Rai Bahadur B. C. Patnaik, Professer Jayakrushna Misra and Sri Radhanath Rath dealt with the different aspects of Bhanja's genius. Pala parties and musicial soirees of Bhanja's songs enlivened the proceedings of the last three days of the week. There was record attendance and the crowds of visitors grew bigger every day till there was not even standing place on the last day. The celebrations have indeed generated a new enthusiasm and awareness among the Oriya young men of the greatness of Upendra Bhanja and the vastness and richness of Oriya literature."

## ୧୯୫୦

ମେ ମାସ ୯ ତାରିଖଠାରୁ ୧୭ ତାରିଖ ପର୍ଯ୍ୟନ୍ତ କଟକ ଟାଉନ ହଲ୍ ଓ ଶ୍ରୀରାମଚନ୍ଦ୍ର ଭବନରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ପାଳିତ ହୋଇଥିଲା । ମୁଁ ଉଦ୍‌ଘାଟନ କରିଥିଲି ଓ ୧୭ ତାରିଖ ଦିନ ପୁରୋଧା ହୋଇଥିଲି । ଅନ୍ୟାନ୍ୟ ଦିନମାନଙ୍କରେ ଯଥାକ୍ରମେ ପୁରୋଧା ହୋଇଥିଲେ ଶ୍ରୀ ଲିଙ୍ଗରାଜ ମିଶ୍ର, ଶ୍ରୀ ରାମଦେବ ସିଂହ, ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, ଶ୍ରୀ ଅଭିରାମ ଉଲ୍ଲଭ ମହାନ୍ତି, ଶ୍ରୀ ଜୟକୃଷ୍ଣ ମିଶ୍ର, ଶ୍ରୀ କାଳୀଚରଣ ପଟ୍ଟନାୟକ । ପାଲା, ଗୋଟିପୁଅ ନୃତ୍ୟ, ଦାସକାଠିଆ ଅନୁଷ୍ଠାନମାନଙ୍କ ଦ୍ୱାରା ଜୟନ୍ତୀ ସଙ୍ଗୀତ-ମୁଖର ହୋଇଥିଲା ।

ଏ ବର୍ଷ ଜୟନ୍ତୀ ସମ୍ପର୍କରେ ଦୈନିକ ଆଶାରେ ପ୍ରକାଶିତ ନିମ୍ନଲିଖିତ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ—

"ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟ ଓଡ଼ିଆ ସାହିତ୍ୟ-ଜଗତରେ ଏକ ଅତ୍ୟୁଜ୍ଜ୍ୱଳ ରତ୍ନବିଶେଷ । ଏହାକୁ ବେଖାତିର କରିବାଦ୍ୱାରା ଆମେ ଆମ ଅଜ୍ଞାନତାର ପରିଚୟ ଦେଉଛୁଁ । ଭଞ୍ଜଙ୍କ ପ୍ରତିଭା ଓଡ଼ିଶା ବାହାରେ ପ୍ରସାରିତ ହୋଇ ନାହିଁ ବୋଲି ତାଙ୍କ ପ୍ରତିଭାକୁ ସାମାନ୍ୟ ମଣିବା ବାଞ୍ଛନୀୟ ନୁହେଁ । ସେ ଯେଉଁ ଯୁଗର କବି ସେ ଯୁଗରେ ପ୍ରଚୁର ଯନ୍ତ୍ର ଏତେ ଉନ୍ନତ ହୋଇ ନ ଥିଲା ବୋଲି ଭଞ୍ଜେ ଓଡ଼ିଶା ବାହାରେ ଆତ୍ମପ୍ରକାଶ କରିପାରି ନ ଥିଲେ । ଆଜି ଯଦି ଆମେ ସେ ବ୍ୟବସ୍ଥା କରିପାରୁ ତେବେ ଭଞ୍ଜକବି ସୁନିଶ୍ଚିତଭାବେ ବିଶ୍ୱକବିର ସମ୍ମାନ ପାଇପାରନ୍ତେ ।"

ଜୁଲାଇ ମାସ ୨୦ ତାରିଖରେ ଉତ୍କଳ ଯୁବ ସାହିତ୍ୟ ସମାଜର ନିର୍ବାଚନ ସଭା ହୋଇଥିଲା ।

ଅଗଷ୍ଟ ମାସ ୨୫ ଓ ୨୬ ତାରିଖରେ ଯଥାକ୍ରମେ ଶ୍ରୀ ଜୟକୃଷ୍ଣ ମିଶ୍ର ଓ ମୋ ସଭାପତିତ୍ୱରେ କବିକଳହଂସ ଗୋପାଳକୃଷ୍ଣ ଜୟନ୍ତୀ ପାଳିତ ହୋଇଥିଲା । ମୁଁ ଉତ୍ସବର ଉଦ୍‌ଘାଟନ କରିଥିଲି । ଶ୍ରୀ ବଂଶୀଧର ମହାନ୍ତି ପ୍ରଧାନ ବକ୍ତା ହୋଇଥିଲେ ।

୧୯୫୧

ଜାନୁଆରୀ ୧୩ ଓ ୧୪ ତାରିଖ ଦିନ ଦୀନକୃଷ୍ଣ ଜୟନ୍ତୀ ପାଳିତ ହୋଇଥିଲା । ମୁଁ ଉତ୍ସବର ଉଦ୍‌ଘାଟକ ଓ ପ୍ରଥମ ଦିନର ପୁରୋଧା ଥିଲି । ୨ୟ ଦିନ ଶ୍ରୀ ଜୟକୃଷ୍ଣ ମିଶ୍ର ପୁରୋଧା ହୋଇଥିଲେ । ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର ଓ ଶ୍ରୀ ଚନ୍ଦ୍ରଶେଖର ପଟ୍ଟନାୟକ ବିଶିଷ୍ଟ ବକ୍ତା ଥିଲେ ।

ଜାନୁଆରୀ ମାସ ୧୧ ତାରିଖ ଦିନ ମୋ ସଭାପତିତ୍ୱରେ କଳିଙ୍ଗ ଭାରତୀ ଭବନରେ କବିସୂର୍ଯ୍ୟ ଜୟନ୍ତୀ ପାଳିତ ହୋଇଥିଲା ।

ମେ ମାସ ୧୩ ତାରିଖଠାରୁ ୨୦ ତାରିଖ ପର୍ଯ୍ୟନ୍ତ ଶ୍ରୀରାମଚନ୍ଦ୍ର ଭବନରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ପାଳିତ ହୋଇଥିଲା । ପାଲା, ଦାସକାଠିଆ ଓ ଓଡ଼ିଶୀ ସଙ୍ଗୀତରେ ଉତ୍ସବ ମୁଖରିତ ହୋଇଥିଲା ।

ଅକ୍ଟୋବର ମାସ ୨୭ ଓ ୨୮ ତାରିଖରେ ଯଥାକ୍ରମେ ଶ୍ରୀ ଜୟକୃଷ୍ଣ ମିଶ୍ର ଓ ଶ୍ରୀ ବାନାମ୍ବର ଆଚାର୍ଯ୍ୟଙ୍କ ପୌରୋହିତ୍ୟରେ କବିକଳହଂସ ଗୋପାଳକୃଷ୍ଣ ଜୟନ୍ତୀ ପାଳିତ ହୋଇଥିଲା ।

୧୯୫୨

ଫେବୃଆରୀ ମାସ ୨୩, ୨୪ ଓ ୨୫ ତାରିଖରେ ସାରସ୍ୱତ ମହୋତ୍ସବ ଅନୁଷ୍ଠିତ ହୋଇ ଗୌରଚରଣ, ଭକ୍ତଚରଣ ଓ ଦୀନ-କୃଷ୍ଣଙ୍କ ସ୍ମୃତି-ପୂଜା କରାଯାଇଥିଲା । ପ୍ରଥମ ଦିନ ଓ ତୃତୀୟ ଦିନ ମୁଁ ଏବଂ ଦ୍ୱିତୀୟ ଦିନ ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର ପୁରୋଧା ହୋଇଥିଲେ ।

ମେ ମାସ ୧୫ ତାରିଖରୁ ୨୧ ତାରିଖ ପର୍ଯ୍ୟନ୍ତ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ଅନୁଷ୍ଠିତ ହୋଇଥିଲା । ମୁଁ ଉଦ୍‌ଘାଟକ ଓ ୧୭ ତାରିଖ ଦିନ ପୁରୋଧା ଥିଲି । ଅନ୍ୟାନ୍ୟ ଦିନରେ ଯଥାକ୍ରମେ ଶ୍ରୀ ରାଧାନାଥ ରଥ, ଶ୍ରୀ ଅଭିରାମ ମହାନ୍ତି, ଶ୍ରୀ ଜୟକୃଷ୍ଣ ମିଶ୍ର, ଶ୍ରୀ କାଳୀଚରଣ ପଟ୍ଟନାୟକ ଓ ଶ୍ରୀ ଚନ୍ଦ୍ରଶେଖର ପଟ୍ଟନାୟକ ପୁରୋଧା ହୋଇଥିଲେ ।

ମୋ ପ୍ରଣୀତ **Kabisamrat Upendra Bhanja Souvenir** ପ୍ରକାଶ ପାଇଥିଲା ।

୧୯୪୯ଠାରୁ ୧୯୫୨ ମସିହା ମଧ୍ୟରେ ଉତ୍କଳ ଯୁବସାହିତ୍ୟ ସମାଜର ସଭ୍ୟମାନଙ୍କ ଦ୍ୱାରା ପ୍ରଦତ୍ତ ଧନ ସହିତ ନିମ୍ନଲିଖିତ ସଜ୍ଜନମାନଙ୍କଠାରୁ ସାହାଯ୍ୟରୂପେ ପ୍ରାପ୍ତ ଧନ ମିଶି ସମାଜ କର୍ତ୍ତୃକ ଅନୁଷ୍ଠିତ ଉତ୍ସବମାନଙ୍କର ବ୍ୟୟ ନିର୍ବାହିତ ହୋଇଥିଲା । ଏ ଧନ ଯତ୍‌କିଞ୍ଚିତ ହେଲେ ମଧ୍ୟ ଆନ୍ତରିକତା ପ୍ରଣୋଦିତ ହୋଇଥିବାରୁ ନିଶ୍ଚୟ ମହତ୍ତ୍ୱ । ସ୍ୱାମୀ ଶ୍ରୀ ବିଶ୍ୱାନନ୍ଦ ଦାସ, ଶ୍ରୀ ପାରେଶ୍ୱର ମହାନ୍ତି, ଶ୍ରୀ ଦୀନବନ୍ଧୁ ସାହୁ, ଶ୍ରୀ ଦିବ୍ୟସିଂହ ଦାସ, ଶ୍ରୀ ମୋତିଲାଲ ପଣ୍ଡିତ, ଶ୍ରୀମତୀ ଦେବହୂତି ଦେଈ, ଶ୍ରୀ ଘନଶ୍ୟାମ ନାୟକ, ଶ୍ରୀ ଶ୍ରୀକୃଷ୍ଣ ମହାନ୍ତି, ଶ୍ରୀ ଲାଲମୋହନ ପଟ୍ଟନାୟକ, ଶ୍ରୀ ଶ୍ରୀଧର ମିଶ୍ର, ଶ୍ରୀ ଗୁରୁଚରଣ ମହାନ୍ତି, ଶ୍ରୀ ଶରତ୍‌ଚନ୍ଦ୍ର ଭଞ୍ଜ ଦେଓ ।

ଏ ବର୍ଷମାନଙ୍କରେ ନିମ୍ନଲିଖିତ ବ୍ୟକ୍ତିମାନେ ବିଶେଷ ଉଲ୍ଲେଖଯୋଗ୍ୟ ପୃଷ୍ଠପୋଷକତା କରି ସମାଜର କୃତଜ୍ଞତା ଅର୍ଜ୍ଜନ କରିଥିଲେ ।

ଶ୍ରୀ ରଣଜିତ ସିଂହ ବରିହା ଟ୫୦୦୦, ଶ୍ରୀ ହରେକୃଷ୍ଣ ମହତାବ ଟ୩୦୦୦, ଆଠମଲ୍ଲିକାଧୀଶ୍ୱର ଶ୍ରୀ କିଶୋର ଚନ୍ଦ୍ର ଦେବ ଟ ୨୫୦୦, ପଣ୍ଡିତ ଶ୍ରୀ ଲିଙ୍ଗରାଜ ମିଶ୍ର ଟ୫୦୦ ।

ଛବିଶ

## ୧୯୫୩

ମେ ମାସ ୧୭ ତାରିଖଠାରୁ ୨୩ ତାରିଖ ପର୍ଯ୍ୟନ୍ତ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ପାଳିତ ହୋଇଥିଲା । ଏଥିପାଇଁ ଶ୍ରୀ ବି. ପଟ୍ଟନାୟକଙ୍କ ସଭାପତିତ୍ୱରେ ସ୍ୱତନ୍ତ୍ର ଅଭ୍ୟର୍ଥନା ସମିତି ଗଠିତ ହୋଇଥିଲା ଓ ରେଭେନ୍ସା କଲେଜିଏଟ୍ ସ୍କୁଲ୍ ହତାରେ ସ୍ୱତନ୍ତ୍ର ସଭାମଣ୍ଡପ ନିର୍ମିତ ହୋଇଥିଲା । ଅନ୍ୟନ ବିରାଟ ଜନତାକୁ ସ୍ଥାନ ଯୋଗାଇବା ଅସମ୍ଭବ ବିବେଚନା କରାଗଲା । ରାଜ୍ୟପାଳ ଶ୍ରୀ ସୟିଦ ଫଜଲ ଅଲି ୨୦ ତାରିଖ ସଭାର ପୁରୋଧା ହୋଇଥିଲେ । ଏହିସବୁ ବିଶେଷତ୍ୱ ଯେଣୁ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ଅଭ୍ୟୁଦୟର ଗୋଟିଏ ଅଭିନବ ପର୍ଯ୍ୟାୟରେ ଉପନୀତ ହେଲା ବୋଲି ଲୋକେ ଭାବିବାକୁ ଆରମ୍ଭ କଲେ ।

ପ୍ରଥମ ଦିନ ମୁଁ ପୁରୋଧା, ଶ୍ରୀ ଅନୁପ ସିଂହ ଦେଓ ପ୍ରଧାନ ଅତିଥି ଓ ଶ୍ରୀ ଜଗଦ୍‌ବନ୍ଧୁ ମହାପାତ୍ର ପ୍ରଧାନ ବକ୍ତା ଥିଲେ । ଗୋଟିପୁଅ ଦଳ ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ ।

ଦ୍ୱିତୀୟ ଦିନ ଶ୍ରୀ ବୀରକିଶୋର ରାୟ ପୁରୋଧା, ଶ୍ରୀ ବ୍ରଜବିହାରୀ ମିଶ୍ର ପ୍ରଧାନ ଅତିଥି, ଶ୍ରୀ ପ୍ରାଣନାଥ ମହାନ୍ତି ଓ ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ପ୍ରଧାନ ବକ୍ତା ଥିଲେ । ଦାସକାଠିଆ ଅନୁଷ୍ଠାନ ଗୀତ ଓ ନୃତ୍ୟ ପରିବେଷଣ କରିଥିଲେ ।

ତୃତୀୟ ଦିନ ଶ୍ରୀ ଲାଲମୋହନ ପଟ୍ଟନାୟକ ପୁରୋଧା, ଶ୍ରୀ ସୁଧାକର ପଟ୍ଟନାୟକ ଓ ନାରୀକବି ଶ୍ରୀମତୀ ଅପର୍ଣ୍ଣା ଦେବୀ ପ୍ରଧାନ ଅତିଥି ଓ ଶ୍ରୀ ବଳଭଦ୍ର ବହିଦାର ପ୍ରଧାନ ବକ୍ତା ଥିଲେ । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଶ୍ରୀ ରଜତ କୁମାର କରଙ୍କ ପ୍ରଣୀତ କବିସମ୍ରାଟ ନାଟକ ଅଭିନୀତ ହୋଇଥିଲା ।

ଚତୁର୍ଥ ଦିନ ଡକ୍ଟର ପର୍ଶୁରାମ ମିଶ୍ର ପୁରୋଧା, ଶ୍ରୀ ହରପ୍ରସାଦ ଦେବ ପ୍ରଧାନ ଅତିଥି, ଶ୍ରୀ କାଳୀକୃଷ୍ଣ ମିଶ୍ର ଓ ଶ୍ରୀ କାଳନ୍ଦୀ ଚରଣ ପାଣିଗ୍ରାହୀ ପ୍ରଧାନ ବକ୍ତା ହୋଇଥିଲେ ।

ପଞ୍ଚମ ଦିନ ରାଜ୍ୟପାଳ ଶ୍ରୀ ସଯିଦ ଫଜଲ ଅଲି ପୁରୋଧା, ରାଜା ଶ୍ରୀ ଅମରେନ୍ଦ୍ର ମାନସିଂହ ପ୍ରଧାନ ଅତିଥି ଓ ଶ୍ରୀ ହୃଦାନନ୍ଦ ରାୟ ପ୍ରଧାନ ବକ୍ତା ହୋଇଥିଲେ ।

ଷଷ୍ଠ ଦିନ ଶ୍ରୀ କିଶୋର ଚନ୍ଦ୍ର ଦେଓ ଭଞ୍ଜ ପୁରୋଧା, ଶ୍ରୀ ବିମଳେନ୍ଦୁ ରାୟ ପ୍ରଧାନ ଅତିଥି, ଶ୍ରୀ ଚନ୍ଦ୍ରଶେଖର ପଟ୍ଟନାୟକ ଓ ଶ୍ରୀ ରଜତ କୁମାର କର ପ୍ରଧାନ ବକ୍ତା ହୋଇଥିଲେ ।

ସପ୍ତମ ଦିନ ଶ୍ରୀ ନିତ୍ୟାନନ୍ଦ କାନୁନଗୋ ପୁରୋଧା, ଶ୍ରୀ ନୀଳମଣି ସେନାପତି ପ୍ରଧାନ ଅତିଥି ଓ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରଧାନ ବକ୍ତା ହୋଇଥିଲେ ।

ଶ୍ରୀ ହୃଦୟନାଥ ମିଶ୍ରଙ୍କ ପ୍ରଣୀତ ଲାବଣ୍ୟବତୀ ନାଟକ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା ।

ଅଷ୍ଟମ ଦିନ ଡକ୍ଟର ଶ୍ରୀ ହରେକୃଷ୍ଣ ମହତାବ ପୁରୋଧା, ଶ୍ରୀମତୀ ବସନ୍ତମଞ୍ଜରୀ ଦେବୀ ପ୍ରଧାନ ଅତିଥି ଓ ଶ୍ରୀ ଚିନ୍ତାମଣି ମିଶ୍ର ପ୍ରଧାନ ବକ୍ତା ହୋଇଥିଲେ ।

ଲାବଣ୍ୟବତୀ ନାଟକର ପୁନରଭିନୟ ହୋଇଥିଲା ।

ମୋ ପ୍ରଣୀତ କଳିଙ୍ଗ କବିସମ୍ରାଟ ଓ କଳିଙ୍ଗ ଭାରତୀ ପୁସ୍ତକର ଇଂରାଜୀ ସଂସ୍କରଣ ଓ ଭଞ୍ଜପ୍ରଭା ଗ୍ରନ୍ଥ ପ୍ରକାଶ ପାଇଥିଲା ।

ଜୟନ୍ତୀରେ ଟ ୧୦,୫୬୬୍ୟ ବ୍ୟୟ ହୋଇଥିଲା ।

## ୧୯୫୪

ମେ ମାସ ୧୬ ତାରିଖଠାରୁ ୨୩ ତାରିଖ ପର୍ଯ୍ୟନ୍ତ ରେଭେନ୍‌ସା କଲେଜିଏଟ୍ ସ୍କୁଲ ପ୍ରାଙ୍ଗଣରେ ନିର୍ମିତ ସ୍ୱତନ୍ତ୍ର ସଭା

ମଣ୍ଡପରେ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଜୟନ୍ତୀ ପାଳିତ ହୋଇଥିଲା । ୧୯୫୭ ପରେ ଏ ବର୍ଷ ମଧ୍ୟ ଗୋଟିଏ ଅଭ୍ୟର୍ଥନା ସମିତି ଗଠିତ ହୋଇଥିଲା ଓ ତହିଁରେ ଡକ୍ଟର ହରେକୃଷ୍ଣ ମହତାବ ସଭାପତି ହୋଇଥିଲେ । ଗତବର୍ଷ ଠାରୁ ଏ ବର୍ଷ ଜନତାର ଭିଡ଼ ଅଧିକ ହୋଇଥିଲା ।

ପ୍ରଥମ ଦିନ ମୁଁ ପୁରୋଧା, ଶ୍ରୀ ଅନନ୍ତପ୍ରସାଦ ପଣ୍ଡା ପ୍ରଧାନ ଅତିଥି ଏବଂ ଶ୍ରୀ ନିର୍ଲୋଚନ ମିଶ୍ର ଓ ଶ୍ରୀ ଚନ୍ଦ୍ରଶେଖର ପଟ୍ଟନାୟକ ପ୍ରଧାନ ଅତିଥି ହୋଇଥିଲେ । ପୂର୍ଣ୍ଣତିଥି ନାମକ ସଙ୍ଗୀତରୂପକ ଅଭିନୀତ ହୋଇଥିଲା ।

ଦ୍ୱିତୀୟ ଦିନ ପଣ୍ଡିତ ନୀଳକଣ୍ଠ ଦାସ ପୁରୋଧା, ଶ୍ରୀ କାଳୀଚରଣ ପଟ୍ଟନାୟକ ପ୍ରଧାନ ଅତିଥି, ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକ ଓ ପଣ୍ଡିତ ବିଶ୍ୱନାଥ ଆଗ୍ନେୟୀ ପ୍ରଧାନ ବକ୍ତା ହୋଇଥିଲେ ।

ତୃତୀୟ ଦିନ ଶ୍ରୀ ଅଭିରାମ ମହାନ୍ତି ପୁରୋଧା, ଶ୍ରୀ ଭୈରବଚନ୍ଦ୍ର ମହାନ୍ତି ପ୍ରଧାନ ଅତିଥି, ଶ୍ରୀ ବ୍ରଜବିହାରୀ ମିଶ୍ର ଓ ଶ୍ରୀ ବ୍ରହ୍ମାନନ୍ଦ ରାୟ ପ୍ରଧାନ ବକ୍ତା ହୋଇଥିଲେ ।

ଦ୍ୱିତୀୟ ଓ ତୃତୀୟ ଦିନ ବାଦୀ ପାଲା ହୋଇଥିଲା ।

ଚତୁର୍ଥ ଦିନ ଡକ୍ଟର କରୁଣାକର କର ପୁରୋଧା, ଶ୍ରୀ କପିଳେଶ୍ୱର ଦାସ ପ୍ରଧାନ ଅତିଥି ଏବଂ ଶ୍ରୀ ଜୟକୃଷ୍ଣ ମିଶ୍ର ଓ ଶ୍ରୀ ଜଗନ୍ନାଥ ମିଶ୍ର ପ୍ରଧାନ ବକ୍ତା ହୋଇଥିଲେ । ଓଡ଼ିଶୀ ନୃତ୍ୟ ପ୍ରଦର୍ଶନୀ ହୋଇଥିଲା ।

ପଞ୍ଚମ ଦିନ ଶ୍ରୀ ରାଧାନାଥ ରଥ ପୁରୋଧା, ଶ୍ରୀ ଚିନ୍ତାମଣି ମିଶ୍ର ପ୍ରଧାନ ଅତିଥି ଓ ଶ୍ରୀ ପ୍ରାଣନାଥ ମହାନ୍ତି ପ୍ରଧାନ ବକ୍ତା ହୋଇଥିଲେ ।

ଷଷ୍ଠ ଦିନ ପଣ୍ଡିତ ଗୋଦାବରୀଶ ମିଶ୍ର ପୁରୋଧା, ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରଧାନ ଅତିଥି, ପଣ୍ଡିତ ବ୍ରଜବନ୍ଧୁ ତ୍ରିପାଠୀ ଶର୍ମା ଓ ପଣ୍ଡିତ ସଦାଶିବ ରଥ ଶର୍ମା ପ୍ରଧାନ ବକ୍ତା ହୋଇଥିଲେ । ଭଞ୍ଜୀୟ-ରଚନା ନାଟ୍ୟ ପରିବେଷିତ ହୋଇଥିଲା ।

ସପ୍ତମ ଦିନ ଡକ୍ଟର ହରେକୃଷ୍ଣ ମହତାବ ପୁରୋଧା, ଶ୍ରୀମତୀ ବସନ୍ତମଞ୍ଜରୀ ଦେବୀ ପ୍ରଧାନ ଅତିଥି, ଶ୍ରୀ ଗୋଲୋକଚନ୍ଦ୍ର ପ୍ରଧାନ ଓ ଶ୍ରୀ ରଜତକୁମାର କର ପ୍ରଧାନ ବକ୍ତା ହୋଇଥିଲେ । ଭଞ୍ଜୀୟ ରଚନା ଓ ଦାସକାଠିଆ ନୃତ୍ୟ ପ୍ରଦର୍ଶିତ ହୋଇଥିଲା ।

ଅଷ୍ଟମ ଦିନ ମୁଁ ପୁରୋଧା ହୋଇଥିଲି । ଓଡ଼ିଶୀ ନୃତ୍ୟ ଓ ଭଞ୍ଜୀୟ-ରଚନା ପ୍ରଦର୍ଶିତ ହୋଇଥିଲା ।

ଡିସେମ୍ବର ମାସ ୨୨, ୨୩ ଓ ୨୪ ତାରିଖରେ କଟକ ଟାଉନ ହଲ୍‌ରେ ସାରସ୍ୱତ ମହୋତ୍ସବ ପାଳିତ ହୋଇଥିଲା । ପ୍ରଥମ ଦିନ ପୁରାଣ ଯୁଗର କବି ସାରଳା ଦାସ ଓ ପଞ୍ଚସଖାଙ୍କ ସ୍ମୃତି-ପୂଜା ହୋଇଥିଲା । ପଣ୍ଡିତ ନୀଳକଣ୍ଠ ଦାସ ଉଦ୍‌ଘାଟକ ଓ ଡକ୍ଟର କରୁଣାକର କର ପୁରୋଧା ହୋଇଥିଲେ ।

ଦ୍ୱିତୀୟ ଦିନ କାବ୍ୟ ଯୁଗର କବି ଦୀନକୃଷ୍ଣ, ଭକ୍ତଚରଣ ଓ ଅଭିମନ୍ୟୁଙ୍କ ସ୍ମୃତି-ପୂଜା ହୋଇଥିଲା । ମୁଁ ସଭାପତି ହୋଇଥିଲି ।

ତୃତୀୟ ଦିନ ସଙ୍ଗୀତଯୁଗର କବି ବନମାଳୀ, କବିସୂର୍ଯ୍ୟ, ଗୌରଚରଣ, ଗୋପାଳକୃଷ୍ଣ ଆଦି ସଙ୍ଗୀତ-କବିମାନଙ୍କ ସ୍ମୃତି ପୂଜା ହୋଇଥିଲା । ମୁଁ ପୁରୋଧା ହୋଇଥିଲି ।

**୧୯୫୫**

ଜାନୁଆରୀ ମାସ ୨୮ ତାରିଖ ବସନ୍ତ ପଞ୍ଚମୀଠାରୁ ୩୧ ତାରିଖ ମାଘ ସପ୍ତମୀ ପର୍ଯ୍ୟନ୍ତ ମୋ ସଭାପତିତ୍ୱରେ କଳିଙ୍ଗ

ଭାରତୀ ଭବନରେ କୋଣାର୍କ ଜୟନ୍ତୀ ପାଳିତ ହୋଇଥିଲା । କଳିଙ୍ଗ ଭାରତୀ ଇତିହାସରେ କୋଣାର୍କ ଜୟନ୍ତୀ ପାଳନ କରାଯିବାର ଏହା ପ୍ରଥମ । ଏଣିକି ଭଞ୍ଜ ଜୟନ୍ତୀ ପରି କୋଣାର୍କ ଜୟନ୍ତୀ ମଧ୍ୟ ନିୟମିତ ଭାବରେ ପ୍ରତିବର୍ଷ ପାଳନ କରାଯିବ, କାରଣ ଭଞ୍ଜ ଓ କୋଣାର୍କରେହିଁ କଳିଙ୍ଗ କୃଷ୍ଟିର ତୁଙ୍ଗତମ ପ୍ରକାଶ । କୋଣାର୍କ ଜୟନ୍ତୀ ସହିତ ସରସ୍ୱତୀ ପୂଜା ଓ ସାରଳା ଦାସ, ଜଗନ୍ନାଥ ଦାସ ଓ କବିସୂର୍ଯ୍ୟଙ୍କ ସ୍ମୃତିପୂଜା କରାଯାଇଥିଲା ।

## ଉପସଂହାର

ଏହିପରି ନିଷ୍ଠାବାନ ତରୁଣ ଜ୍ଞାନ ସାଧକମାନଙ୍କ ବାରବର୍ଷ-ବ୍ୟାପୀ ନିରବଚ୍ଛିନ୍ନ ଉଦ୍ୟମରେ କଳିଙ୍ଗର ସାରସ୍ୱତ କ୍ଷେତ୍ରରେ କଳିଙ୍ଗ ଭାରତୀ ସାମ୍ମୁଖ୍ୟ ଗଠନ ହୋଇଅଛି ।

ଏ ସାମ୍ମୁଖ୍ୟକୁ ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ କରିବାପାଇଁ କଳିଙ୍ଗ ଭାରତୀ ଅନୁଷ୍ଠାନକୁ ୧୮୬୦ ଖ୍ରୀଷ୍ଟାବ୍ଦର ସୋସାଇଟିଜ୍ ରେଜିଷ୍ଟ୍ରେସନ ଆକ୍ଟ ଅନୁସାରେ ରେଜିଷ୍ଟ୍ରି କରିବାର ବ୍ୟବସ୍ଥା ହୋଇଅଛି । ଶୀଘ୍ର ରେଜିଷ୍ଟ୍ରେସନ ସାର୍ଟିଫିକେଟ ଆସି ପହଞ୍ଚିବ ବୋଲି ଆଶା କରାଯାଉଛି ।

ଆଦ୍ୟ ଅବସ୍ଥାରୁ ଏ ପର୍ଯ୍ୟନ୍ତ ଦେଶବାସୀଙ୍କ ଅକୁଣ୍ଠିତ ସହାନୁଭୂତି ଓ ସାହାଯ୍ୟରେ କଳିଙ୍ଗ ଭାରତୀ ଅନୁଷ୍ଠାନ କ୍ରମ ବର୍ଦ୍ଧମାନ ଆଡ଼ମ୍ବରସହକାରେ ବିଭିନ୍ନ ସାରସ୍ୱତ ଉତ୍ସବମାନ ଓ ବିଶେଷ କରି ଭଞ୍ଜଜୟନ୍ତୀ ମହୋତ୍ସବ ପାଳନ କରୁଅଛି । ଦ୍ୱାଦଶ ବାର୍ଷିକ ଭଞ୍ଜ ଜୟନ୍ତୀର ପ୍ରାକ୍କାଳରେ ଆଜି ଦେଶର ମୁଖପାତ୍ର-ରୂପେ ଆପଣମାନଙ୍କୁ ଅତ୍ୟନ୍ତ ବିନୀତ ଭାବରେ ନିମନ୍ତ୍ରଣକରି ମୁଁ ଆପଣମାନଙ୍କ ଦୟା ଓ ସହାନୁଭୂତି ଭିକ୍ଷା କରୁଅଛି ।

ମୁଁ ସକଳ ପ୍ରକାର ହିତକର ପ୍ରସ୍ତାବକୁ ନତମସ୍ତକରେ ଗ୍ରହଣ କରିବାକୁ ସର୍ବଦା ପ୍ରସ୍ତୁତ ।

ଆପଣମାନଙ୍କ ଜରିଆରେ ଦେଶବାସୀମାନଙ୍କ ଆଗରେ ଆଜି ମୁଁ ନିମ୍ନଲିଖିତ ଆବେଦନମାନ ଉପସ୍ଥାପିତ କରୁଅଛି ।

(କ) କଳିଙ୍ଗ ଭାରତୀ ପ୍ରତିଷ୍ଠାନର ନିଜ ଆସ୍ଥାନ ନାହିଁ । ବାଇଶି ବର୍ଷ ହେଲା ମୁଁ ଯେଉଁ ଘରକୁ କିଣିକରେ ମୋ ନିଜର ଆବାସ କରିଅଛି, ତହିଁରେ ଏ ଯାବତ୍ କାଳ ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜ ତଥା କଳିଙ୍ଗ ଭାରତୀର କାର୍ଯ୍ୟାଳୟ ରହିଅଛି । ଦେଶବାସୀ ଇଚ୍ଛାକଲେ ସ୍ୱତନ୍ତ୍ର କଳିଙ୍ଗ ଭାରତୀ ଭବନ ଅଚିରାତ୍ ନିର୍ମିତ ହୋଇପାରେ ।

(ଖ) ମୋର ବ୍ୟକ୍ତିଗତ ଗ୍ରନ୍ଥାଳୟ ମୁଁ ଉତ୍କଳ ଗ୍ରନ୍ଥ ସାହିତ୍ୟର ବ୍ୟବହାର ନିମନ୍ତେ ଛାଡ଼ି ଦେଇଅଛି । ସେଥିରେ ୫୦୦ ଖଣ୍ଡ ପର୍ଯ୍ୟନ୍ତ ଗ୍ରନ୍ଥ ଅଛି । ଏ ଗ୍ରନ୍ଥାଳୟର ସମ୍ୟକ ଅଭିବୃଦ୍ଧି ନିମନ୍ତେ ଦେଶବାସୀଙ୍କ ପୃଷ୍ଠପୋଷକତା ଏକାନ୍ତ ପ୍ରୟୋଜନୀୟ ।

(ଗ) କଳିଙ୍ଗ ଭାରତୀ ପୋଥି ସଂଗ୍ରହରେ ବର୍ତ୍ତମାନ ୪୦ ଖଣ୍ଡ ପର୍ଯ୍ୟନ୍ତ ମୂଲ୍ୟବାନ ପୋଥି ରହିଅଛି । ଅନେକ ପୋଥିରୁ ଗୀତାବଳୀ ଉଦ୍ଧାର କରାଯାଇ ସେ ସବୁକୁ ମାଲିକମାନଙ୍କୁ ଫେରାଇ ଦିଆହୋଇଛି । ଦେଶର ବିଭିନ୍ନ ଅଞ୍ଚଳରୁ ଅପ୍ରକାଶିତ ଦୁର୍ଲ୍ଲଭ ପୋଥି ଅଣାଇବାର ଯୋଜନା କରାଯାଇ ଗ୍ରନ୍ଥମାନଙ୍କ ଉପରେ ତହିଁର ଭାର ନ୍ୟସ୍ତ କରାଯାଇଛି ।

(ଘ) କଳିଙ୍ଗ ଭାରତୀ ପକ୍ଷରୁ ଓଡ଼ିଶାର ଯାବତୀୟ ଗୀତ ସମ୍ଭାରକୁ ପ୍ରକାଶ କରିବା ନିମନ୍ତେ ଗୀତକଳ୍ପତରୁ ନାମକ ବିରାଟ ଗ୍ରନ୍ଥର ପରିକଳ୍ପନା କରାଯାଇଛି । ବିସ୍ମୃତ କବି ଗୌରଚରଣଙ୍କ ଗୀତାବଳୀର ପ୍ରଥମ ଭାଗ ଗୀତକଳ୍ପତରୁ ପ୍ରଥମ ଶାଖାରୂପେ

ପ୍ରକାଶିତ ହୋଇଅଛି । ଏ ଗୀତାବଳୀର ଆଉ ଦୁଇ ଭାଗ ପ୍ରକାଶ ହେବାକୁ ଅଛି । ନିକଟରେ ଜଗନ୍ନାଥ ଜଣାଣ ଭଜନ ନାମକ ଖଣ୍ଡିଏ ସଂଗ୍ରହ ଗ୍ରନ୍ଥ ଗୀତକଳ୍ପତରୁର ୨ୟ ଶାଖାରୂପେ ପ୍ରକାଶିତ ହେବ । ପୋଥିମାନଙ୍କରୁ ଉଦ୍ଧାର ହୋଇଥିବା ୫୦୦୦ ପର୍ଯ୍ୟନ୍ତ ଅପ୍ରକାଶିତ ସଙ୍ଗୀତ ପ୍ରକାଶକୁ ଅପେକ୍ଷା କରି ରହିଛି । ଏଥିପାଇଁ ବିପୁଳ ଅର୍ଥର ପ୍ରୟୋଜନ । ଏ ମହାର୍ଘ ଦୁର୍ଲ୍ଲଭ ସମ୍ଭାରକୁ ଦେଶବାସୀ ବିସ୍ମୃତି ଓ ବିଲୟର କବଳରୁ ରକ୍ଷା କରନ୍ତୁ ।

(ଙ) କବିସମ୍ରାଟ ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ-ସାମନ୍ତ ସିଂହାର, କବିସୂର୍ଯ୍ୟ ବଳଦେବ ରଥ, କବିକଳହଂସ, ଗୋପାଳକୃଷ୍ଣ ପଟ୍ଟନାୟକ, ବନମାଳୀ ଦାସ ପ୍ରଭୃତିଙ୍କ ଗ୍ରନ୍ଥାବଳୀ-ମାନଙ୍କୁ ହିନ୍ଦୀ ଓ ଇଂରେଜୀରେ ଅନୁବାଦ କରି ବିଶ୍ୱର ସାରସ୍ୱତ ପୀଠରେ ଓଡ଼ିଆ ସାହିତ୍ୟକୁ ଉପସ୍ଥାପିତ କରିବାର ପରିକଳ୍ପନା ରହିଛି । ଏ କାମରେ **Kabisamrat Upendra Bhanja Souvenir** ପ୍ରକାଶ କରାଯାଇ ଶୁଭ ଦିଆଯାଇଛି ମାତ୍ର । ପ୍ରେମସୁଧାନିଧିର ନୈଭ୍ରିପିକ ସଂସ୍କରଣ ଯନ୍ତ୍ରସ୍ଥ ରହିଛି । ଏସବୁ ପାଇଁ ମଧ୍ୟ ବିପୁଳ ଧନର ପ୍ରୟୋଜନ ଅଛି ।

(ଚ) ଏହାଛଡ଼ା କଳିଙ୍ଗ ଭାରତୀ ଗ୍ରନ୍ଥାବଳୀରୂପେ ଏ ପର୍ଯ୍ୟନ୍ତ ଭଞ୍ଜପ୍ରଭା, କବିତା କୁମୁଦ, ଆଦ୍ୟ ଅର୍ଘ୍ୟ, କବିସମ୍ରାଟ ସ୍ମରଣିକା, କଳିଙ୍ଗ, କବିସମ୍ରାଟ ଓ କଳିଙ୍ଗ ଭାରତୀର ଓଡ଼ିଆ ଓ ଇଂରାଜୀ ସଂସ୍କରଣ ଓ **My Dreams** ପ୍ରକାଶ ପାଇଛି । ପ୍ରଥମୋକ୍ତ ତିନି ଖଣ୍ଡ ବ୍ୟତୀତ ଅନ୍ୟାନ୍ୟ ପୁସ୍ତକଗୁଡ଼ିକ ବିଭିନ୍ନ ବର୍ଷର ଭଞ୍ଜ ଜୟନ୍ତୀରେ ଦର୍ଶକମାନଙ୍କ ମଧ୍ୟରେ ବିନା ମୂଲ୍ୟରେ ବିତରଣ କରାଯାଇଥାଏ ।

ଏ ସବୁ ଧରଣର ମୌଳିକ କବିତା ଗ୍ରନ୍ଥ ଓ ସମାଲୋଚନା ଗ୍ରନ୍ଥର ପ୍ରକାଶ ନିମନ୍ତେ ଅଜସ୍ର ଅର୍ଥବ୍ୟୟର ପ୍ରୟୋଜନ ରହିଅଛି ।

ଛନ୍ଦ ଓ ଓଡ଼ିଶି ରାଗରାଗିଣୀକୁ ବନ୍ଧନ କରି ପ୍ରଗତିଶୀଳ ସାହିତ୍ୟ ସୃଷ୍ଟି କରିବା ଏ ଅନୁଷ୍ଠାନର ମୂଳ ଲକ୍ଷ୍ୟ । ଓଡ଼ିଆ ନାଟକରେ ଓଡ଼ିଶି ସଙ୍ଗୀତ ଓ ନୃତ୍ୟ ପରିବେଷଣ ଏହାର ଧେୟ । ଏ ଆଦର୍ଶର ସମ୍ୟକ ପ୍ରତିପାଦନ ପାଇଁ କଳିଙ୍ଗ ଭାରତୀ ନାମକ ଉଚ୍ଚକୋଟୀର ମାସିକ ପତ୍ରିକା ପ୍ରକାଶ କରିବା ନିମନ୍ତେ ଦେଶବାସୀଙ୍କ ପୃଷ୍ଠପୋଷକତା ଏହାର କାମ୍ୟ । ଭଞ୍ଜଜୟନ୍ତୀ ଏହାର ମୂଖ୍ୟ ଉତ୍ସବ ହୋଇଥିଲେ ସୁଦ୍ଧା ପରମ୍ପରାସମ୍ମତ ସମଗ୍ର ଜାତୀୟ ସାହିତ୍ୟ ଏହାର ଅନୁଶୀଳନ ଓ ସେବାର ସାମଗ୍ରୀ ।

## ୧୯୫୫ ମସିହାର ଆଗାମୀ ଭଞ୍ଜଜୟନ୍ତୀ

ମୁଁ ଆପଣମାନଙ୍କୁ ଅବଗତ କରାଇବାକୁ ଚାହେଁ ଯେ ଗତ ୧୯୫୪ ମସିହା ଭଞ୍ଜ ଜୟନ୍ତୀରେ ଟ ୪୫୬୯ ।/ ଖର୍ଚ୍ଚ ହୋଇଥିଲା ଏବଂ କଳିଙ୍ଗ ଭାରତୀ ପାଣ୍ଠିରେ ଅଳ୍ପ ପ୍ରାୟ ୧୯୦୦ ଟଙ୍କା ହାତରେ ରହିଛି ଅଛି ।

ଏ ବର୍ଷ ଜୟନ୍ତୀରେ ଗ୍ରନ୍ଥ ପ୍ରକାଶନ, ମଞ୍ଚ ନିର୍ମାଣ, କବିସମ୍ରାଟ ନାଟକ ଅଭିନୟର ବନ୍ଦୋବସ୍ତ, ସାଂସ୍କୃତିକ ବିନୋଦନ ଓ ଅନ୍ୟାନ୍ୟ କାର୍ଯ୍ୟର ସମାଧା ନିମନ୍ତେ ବହୁ ଅର୍ଥର ଆବଶ୍ୟକ ।

ଏ ବର୍ଷ ନୂଆ ନିୟମାବଳୀ ଅନୁସାରେ ଜୟନ୍ତୀର ପରିଚାଳନା ପାଇଁ ଗୋଟିଏ ଅଭ୍ୟର୍ଥନା ସମିତି ଗଠନ କରାଯିବ ।

ମୋର ଭରସା ଓ ବିନୀତ ନିବେଦନ ଯେ ଆପଣମାନେ ତଥା ଦେଶବାସୀ ଅନ୍ୟାନ୍ୟ ବର୍ଷ ପରି ଏ ଦୁରୂହ କାର୍ଯ୍ୟରେ କଳିଙ୍ଗ ଭାରତୀ ଅନୁଷ୍ଠାନକୁ ସର୍ବତୋଭାବରେ ସାହାଯ୍ୟ କରିବେ ।

ଉପସଂହାରରେ ମୁଁ ଆପଣମାନଙ୍କୁ କଳିଙ୍ଗ ଭାରତୀ ଅନୁଷ୍ଠାନର ଗଭୀର କୃତଜ୍ଞତା ଜ୍ଞାପନ କରୁଅଛି ।

**ଜୟ ମା କଳିଙ୍ଗ ଭାରତୀ**

ବିନୀତ ନିବେଦକ

**ଶ୍ରୀ ବଚ୍ଛନ୍ଦଚରଣ ପଟ୍ଟନାୟକ**

ପ୍ରତିଷ୍ଠାତା-ସଭାପତି

କଳିଙ୍ଗ ଭାରତୀ

ଗ୍ରନ୍ଥଭୂଷା ସମବାୟ ପ୍ରେସ, କଟକ-୧